# ଜାତୀୟ କବି ଅଭିନନ୍ଦନ



ବୀରକିଶୋର



ବାଞ୍ଛାନିଧି

ସ୍ୱାଧୀନତାର ରଜତ ଜୟନ୍ତୀ ଉପଲକ୍ଷେ

# ସୂଚୀପତ୍ର



— —



ଜାତୀୟ କବି ବୀରକିଶୋର ଓ ତାଙ୍କର ସହଧର୍ମିଣୀ

# ସଂପାଦକୀୟ

ମାତ୍ର ପଚାଶବର୍ଷର ତ୍ୟାଗ ସାଧନା, ଏବଂ ବ୍ୟାପକ ଗଣ ସଂଗଠନ ଫଳରେ ଗାନ୍ଧିଜୀଙ୍କ ପରିକଳ୍ପିତ ଅହିଂସା ସଂଗ୍ରାମ ସଫଳ ହେଲା । ଭାରତ ସ୍ୱାଧୀନ ହେଲା । ଏଥିପାଇଁ ଲକ୍ଷ ଲକ୍ଷ ନରନାରୀ ନିର୍ଭୀକ ଓ ନିଷ୍ଠାପର ଭାବରେ ଆତ୍ମବଳିଯୋଗ ଓ ଆତ୍ମତ୍ୟାଗର ବ୍ରତ ନେଇଥିଲେ । ଗାନ୍ଧିଜୀଙ୍କର ଦୂର ଦୃଷ୍ଟିସମ୍ପନ୍ନ ଓ ବାସ୍ତବ ନେତୃତ୍ୱରେ ଏବଂ ସ୍ୱାଧୀନତା ସଂଗ୍ରାମୀମାନଙ୍କର ଆତ୍ମତ୍ୟାଗ ଫଳରେ ହିଂସା ପ୍ରଣୋଦିତ ଶାସନ ସଙ୍ଗଠିତ ଅପେକ୍ଷା ଅହିଂସା ଉଦ୍ୟମ ଅଧିକ ତୀକ୍ଷ୍ଣ ଓ ଫଳପ୍ରଦ ପ୍ରମାଣିତ ହେଲା । ସାର୍ଦ୍ଧ ଦୁଇଶହ ବର୍ଷର ପ୍ରତିଷ୍ଠିତ ଦୁର୍ଗ ଏକ ବ୍ୟାଧିଗ୍ରସ୍ତ ଅଚଳ ସାମାଜିକ ବ୍ୟବସ୍ଥା ଭଳି ଭୂଷୁଡ଼ି ପଡ଼ିଲା । ଗଭୀର ଦେଶାତ୍ମବୋଧ ଏବଂ ଦୃଢ଼ ଆଦର୍ଶବାଦକୁ ରୂପାୟିତ କରିବାର ଏକାଗ୍ର ସାଧନା ଏବଂ ଅସୀମ ତ୍ୟାଗ ଫଳରେ ଏହା ସମ୍ଭବ ହେଲା । ମହା ପରାକ୍ରମ ଶାଳୀ ବ୍ରିଟିଶ ସାମ୍ରାଜ୍ୟରେ ସୂର୍ଯ୍ୟ ଅସ୍ତ ହେଉ ନଥିବା ବେଳେ ଗାନ୍ଧିଜୀଙ୍କ ଭଳି ଅର୍ଦ୍ଧନଗ୍ନ ଫକୀରର ନେତୃତ୍ୱରେ ସେହି ଅଭେଦ୍ୟ ଦୁର୍ଗ ତାସଘର ପରି ଭୂଷୁଡ଼ି ପଡ଼ିବ ବୋଲି ହୁଏତ କୋଟି କୋଟି ନରନାରୀଙ୍କର ବିଶ୍ୱାସ ନଥିଲା । ସେହିପରି ଗାନ୍ଧିଜୀଙ୍କର ଅସ୍ତ୍ରହୀନ ଅହିଂସା ଉଦ୍ୟମ ମହା ପରାକ୍ରମଶାଳୀ ବ୍ରିଟିଶ ସରକାର ବିପୁଳ ଅତ୍ୟାଧୁନିକ ଶାଣିତ ଅସ୍ତ୍ର ସମ୍ମୁଖରେ ସାମାନ୍ୟ ବାଲୁକାର ଝଡ଼ ବୋଲି ଯେଉଁମାନେ ବିଶ୍ୱାସ କରୁଥିଲେ, ସେମାନେ ମଧ୍ୟ କ୍ରମେ ବିଶ୍ୱାସ କଲେ ଯେ ଅହିଂସ ଗଣ ସଂଗଠନ ହିଁ ଗଣ ଆନ୍ଦୋଳନର ସଫଳତା ପାଇଁ ଏବଂ ସାମାଜିକ ଓ ଅର୍ଥନୈତିକ କ୍ଷେତ୍ରରେ ବ୍ୟାଧିଗ୍ରସ୍ତ ସମାଜର ବ୍ୟବସ୍ଥାର ଦ୍ରୁତ ପ୍ରତିକାର ପାଇଁ ଅମୋଘ ଔଷଧ ଓ ଅପରିହାର୍ଯ୍ୟ ପନ୍ଥା । ଯେକୌଣସି ସାମାଜିକ ଓ ଅର୍ଥନୈତିକ ବିପ୍ଳବ ପାଇଁ ବୈପ୍ଳବିକ ବିଚାରର ଧାରାର ପ୍ରଥମେ ପ୍ରସାର ଆବଶ୍ୟକ । ଗାନ୍ଧିଜୀଙ୍କର ନେତୃତ୍ୱରେ ସ୍ୱାଧୀନତା ଆନ୍ଦୋଳନର ପ୍ରସାର ପାଇଁ ଏବଂ ଭୀରୁତା ଓ ଅବସାଦର ବିଲୋପପାଇଁ ବ୍ୟାପକ ସଂଗଠନ ସହିତ ସାହିତ୍ୟର ପ୍ରେରଣା ଓ ସଙ୍ଗୀତର ମୂର୍ଚ୍ଛନା ମଧ୍ୟ ବିଶେଷ ଭାବରେ ସହାୟକ ହୋଇଥିଲା ।

ଓଡ଼ିଶାରେ ଦେଶାତ୍ମବୋଧ ଆତ୍ମଶକ୍ତି ଏବଂ ଆତ୍ମଅଭିମାନ ଜାଗ୍ରତ କରିବାରେ ମଧୁସୂଦନ ଦାସ, ଗୋପବନ୍ଧୁ ଦାସ, ଗୋପବନ୍ଧୁ ଚୌଧୁରୀ, ହରେକୃଷ୍ଣ ମହତାବ ଓ ନବକୃଷ୍ଣ ଚୌଧୁରୀ ପ୍ରମୁଖଙ୍କର ଅସାଧାରଣ ସାଙ୍ଗଠନିକ ଶକ୍ତି ସାଧନା ଯୁଗେ ଯୁଗେ ସ୍ମରଣୀୟ ହୋଇ ରହିବ। ସେହିପରି ଦେଶାତ୍ମବୋଧର ପ୍ରେରଣା ଓ ପ୍ରସାର ପାଇଁ ଓଡ଼ିଶାରେ ବହୁ କବିଙ୍କର ଅବଦାନ ଅଛି। ମାତ୍ର ଜାତୀୟ କବି ବୀରକିଶୋର ଦାସ ଏବଂ ସ୍ୱର୍ଗତଃ ବାଞ୍ଛାନିଧି ମହାନ୍ତିଙ୍କର ଏ ଦିଗରେ ଏକାଗ୍ର ସାଧନା ଏବେ ମଧ୍ୟ ଜନସ୍ମୃତିରେ ଜାଗ୍ରତ। ସେମାନଙ୍କର ଦେଶାତ୍ମବୋଧ ସଂଗୀତର ମୂର୍ଚ୍ଛନା ଏକଦା ସ୍ୱାଧୀନତା ସଂଗ୍ରାମୀ ମାନଙ୍କର ମନ୍ତ୍ର ଧ୍ୱନି ଥିଲା। ସେମାନଙ୍କର କବିତା ଓ ସଙ୍ଗୀତ ସ୍ୱାଧୀନତା ସଂଗ୍ରାମକୁ ଉଦ୍‌ବୋଧନ ଓ ପ୍ରେରଣା ଦେଉଥିଲା। ସେମାନଙ୍କର କବିତା ଗାନ କରି ଦେଶର ସ୍ୱାଧୀନତା ପାଇଁ ସମସ୍ତ ଦୁଃଖ ଓ ତ୍ୟାଗକୁ ହସି ହସି ବରଣ କରିବାପାଇଁ ବହୁ ସଂଗ୍ରାମୀ ମନରେ ବଳ ଓ ସାହସ ପାଉଥିଲେ।

ଦେଶର ସ୍ୱାଧୀନତା ପରେ ଏହି ଦୁଇ ଜାତୀୟ କବିଙ୍କୁ ସ୍ମରଣ କରିବା ପାଇଁ କୌଣସି ବିଧିବଦ୍ଧ ଉଦ୍ୟମ ହୋଇପାରି ନାହିଁ। ସ୍ୱର୍ଗତଃ କବି ବାଞ୍ଛାନିଧିଙ୍କର କେତେକ ଦେଶାତ୍ମବୋଧ କବିତା ଓ ସଂଗୀତ ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ ପ୍ରକାଶିତ ହୋଇଅଛି। ମାତ୍ର ସେମାନଙ୍କର ଅସାଧାରଣ ସାଧନା ପାଇଁ କୌଣସି ରାଷ୍ଟ୍ରିୟ ସମ୍ମାନ ପ୍ରଦାନ ନିମନ୍ତେ ପ୍ରସ୍ତାବ ହୋଇ ନାହିଁ। ଅବଶ୍ୟ ସ୍ୱାଧୀନତା ସଂଗ୍ରାମ ସମୟରେ ବ୍ରିଟିଶ ସରକାରଙ୍କ ଦ୍ୱାରା ପ୍ରଦତ୍ତ ରାଏବାହାଦୁର ଦେବାନ-ବାହାଦୁର ଉପାଧୀ ଅପେକ୍ଷା ଜନ ଦରବାରରେ ପ୍ରଦତ୍ତ ଦେଶଗୌରବ ଓ ଦେଶରତ୍ନ ପ୍ରଭୃତି ଉପାଧିର ଗୌରବ ଓ ଗାମ୍ଭୀର୍ଯ୍ୟ ଅଧିକ ଥିଲା। ଜନ ଦରବାରରେ ମଧୁସୂଦନ ଦାସଙ୍କୁ ଉତ୍କଳ ଗୌରବ ଗୋପବନ୍ଧୁ ଦାସଙ୍କୁ ଉତ୍କଳମଣି ଉପାଧିରେ ଭୂଷିତ ଓ ସଂବର୍ଦ୍ଧିତ କରାଯାଇଥିଲା। ସେହିପରି କବି ବାଞ୍ଛାନିଧି ମହାନ୍ତି ଓ କବି ବୀରକିଶୋରଙ୍କୁ ଜାତୀୟ କବି ଭାବରେ ସମ୍ମାନିତ କରାଯାଇଅଛି। ଭାରତରେ ସ୍ୱାଧୀନତାର ରଜତ ଜୟନ୍ତୀ ପାଳନ କରିବା ବିଷୟରେ ଦେଶରେ ବହୁତ ଆଲୋଚନା ଆରମ୍ଭ ହେଲାବେଳେ ଆମେ କେତେକ ଉତ୍କଳୀୟ ସ୍ୱାଧୀନତା ସଂଗ୍ରାମୀ

ଏ ବିଷୟଗୁଡ଼ିକରେ ବହୁ ଦୀର୍ଘ ଆଲୋଚନା କଲୁ । ସେମାନଙ୍କୁ ସ୍ମରଣ କରିବା ଏବଂ ସମ୍ବର୍ଦ୍ଧନା ଜ୍ଞାପନ ଉଦ୍ଦେଶ୍ୟରେ ଆମେ ଆପଣାର ଯଥାଶକ୍ତି ଉଦ୍ୟମ ଆରମ୍ଭ କରିବା ଉଚିତ ବୋଲି ଶ୍ରୀ ମୁରଲୀଧର କାନୁନଗୋ ପ୍ରସ୍ତାବ ଦେଲେ ଏବଂ ଏ ଦିଗରେ ସକ୍ରିୟ ସହଯୋଗ କରିବାକୁ ମଧ୍ୟ ପ୍ରତିଶ୍ରୁତି ଦେଲେ । ଓଡ଼ିଶାର କେତେକ ସୁନାମ ଧନ୍ୟ କବିଙ୍କର ସ୍ମୃତି ରକ୍ଷା ପାଇଁ ଅନେକ ଶିକ୍ଷାନୁଷ୍ଠାନକୁ ସେମାନଙ୍କ ନାମରେ ନାମିତ କରାଯାଇଅଛି । ଜାତୀୟ କବିଙ୍କ ପାଇଁ ମଧ୍ୟ ଅନୁରୂପ ବ୍ୟବସ୍ଥା ଏବଂ ରାଷ୍ଟ୍ରୀୟ ସମ୍ମାନ ପ୍ରଦର୍ଶନ ପାଇଁ ସରକାରଙ୍କୁ ପ୍ରସ୍ତାବ ଦିଆଯାଇଅଛି ।

ଏହି ସାମାନ୍ୟ କାର୍ଯ୍ୟକ୍ରମର ବିନମ୍ର ଉଦ୍ୟମରେ ଶ୍ରୀ ରାଜକିଶୋର ମୋହିଙ୍କର ସାହାଯ୍ୟ ଅବଶ୍ୟ ଉଲ୍ଲେଖଯୋଗ୍ୟ । ଏହି ଉଦ୍ଦେଶ୍ୟରେ ଗଠିତ କମିଟିର ସଦସ୍ୟ ମାନଙ୍କର ଅକୁଣ୍ଠିତ ଉତ୍ସାହ ପ୍ରଦାନ ମଧ୍ୟ ଆମକୁ ଏ ଦିଗରେ ଅଧିକ ଶକ୍ତି ଦେଇଅଛି । ଗ୍ରନ୍ଥଟି ପ୍ରକାଶ କରିବା ଦିଗରେ ଶ୍ରୀ ମହେନ୍ଦ୍ର ମିଶ୍ରଙ୍କର ସହଯୋଗ ମଧ୍ୟ ଉଲ୍ଲେଖ-ଯୋଗ୍ୟ । ଅଧିକାଂଶ ଲେଖା ଉଦ୍ଧାରରେ ମୋର ଝିଅ ମୀତା ମହାପାତ୍ର ସାହାଯ୍ୟ କରିଅଛି । ଓଡ଼ିଆରେ ଦେଶାତ୍ମବୋଧର ପ୍ରଚାର ପାଇଁ ଆପଣାର କବିତା ଓ ସଙ୍ଗୀତ ସୃଷ୍ଟି ଦ୍ୱାରା ଏହି ଦୁଇ କବିଙ୍କର ବିରାଟ ସାଧନା ଓ ଅସାଧାରଣ ତ୍ୟାଗ ଦୃଷ୍ଟିରୁ ଶ୍ରୀ ରାମଚନ୍ଦ୍ର ଭବନରେ ଅନ୍ୟାନ୍ୟ ସାହିତ୍ୟ ରଥୀଙ୍କର ଚିତ୍ର ସମାବେଶ ମଧ୍ୟରେ ସେମାନଙ୍କର ତୈଳଚିତ୍ର ପ୍ରତିଷ୍ଠା ଏବଂ ଅଭିନନ୍ଦନ ଗ୍ରନ୍ଥ ପ୍ରକାଶ ଏବଂ ବନ୍ଧୁ ମିଳନ ଅତି ସାମାନ୍ୟ ଉଦ୍ୟମ ମାତ୍ର । ତଥାପି ଆମର ଶକ୍ତି ଓ ସାମର୍ଥ୍ୟ ଅନୁସାରେ ଯତ୍ ସାମାନ୍ୟ ଉଦ୍ୟମ ଆରମ୍ଭ କରିବା ପରେ ଏହାର ପ୍ରଭାବ ଅନ୍ୟମାନଙ୍କୁ ମଧ୍ୟ କିଛିଟା ପ୍ରଭାବିତ କରୁଥିବାର ଦେଖି ଆମ୍ଭେମାନେ ଉତ୍ସାହିତ ହୋଇଅଛୁ । ଜାତୀୟ ନେତା ଓ ଜାତୀୟ କବି ମାନଙ୍କର ସ୍ମୃତିରକ୍ଷା ଓ ସ୍ୱାଧୀନତା ସଂଗ୍ରାମର ସଂଗ୍ରାମୀ ମାନଙ୍କୁ ସମ୍ବର୍ଦ୍ଧନା ଦ୍ୱାରା ଦେଶରେ ଶ୍ରେଣୀହୀନ ଓ ଶୋଷଣହୀନ ସମୃଦ୍ଧ ସମାଜ ଗଠନ ଦିଗରେ ନୂତନ ପ୍ରେରଣା ଓ ଉତ୍ସାହ ମିଳିଲେ ଏବଂ ନୂତନ ଶକ୍ତି ଜାଗ୍ରତ ହୋଇପାରିଲେ । ଆମ୍ଭମାନଙ୍କର ଶ୍ରମ ସଫଳ ହେବ ଏବଂ ଆଶା ପୂରଣ ହେବ ।

———

# କବି ବାଂଛାନିଧି

● ଡଃ ହରେକୃଷ୍ଣ ମହତାବ

ବାଞ୍ଛାନିଧି ବାବୁ ମୋଠାରୁ ବୟସରେ ପ୍ରାୟ ତିନିବର୍ଷ ବଡ ଥିଲେ । ଘଟଣା ଚକ୍ରରେ ଭଦ୍ରକ ସ୍କୁଲରେ ଛାତ୍ର ଥିବାବେଳେ ସେତେବେଳେ ସେ ଜଣେ ଶିକ୍ଷକ ଥିଲେ । ଅସହଯୋଗ ଆନ୍ଦୋଳନରେ ଆମ୍ଭେମାନେ ସମସ୍ତେ ମାତିଲୁଁ, ବାଞ୍ଛାନିଧିଙ୍କ ସଂଗୀତ ଜନତାର ହୃଦୟ ସ୍ପର୍ଶ କରି ସେମାନଙ୍କ ପ୍ରାଣକୁ ଯେପରି ଆଲୋଡ଼ନ କରୁଥିଲା, ସେଥିରେ ଆମେ ସମସ୍ତେ ମଧ୍ୟ ଆତ୍ମହରା ହୋଇ ଯାଉଥିଲୁଁ । ବାସ୍ତବିକ ସେ ଥିଲେ କବି ।

ମନୁଷ୍ୟ ଯେତେବେଳେ ଗଭୀର ନିଦ୍ରାମଗ୍ନ, ସେତେବେଳେ ପ୍ରତ୍ୟୁଷର ସମ୍ବାଦ ଦିଅନ୍ତି କାକ, କୋକିଳ, କୁମ୍ଭାଟୁଆ । ସେମାନଙ୍କ ସ୍ୱରରେ ମନୁଷ୍ୟ ଜାଗିଉଠେ । ପ୍ରତ୍ୟୁଷରେ ଆସନ୍ନ ମନକୁ ସେମାନେ ଜାଣି ପାରନ୍ତି, ସେମାନଙ୍କ ସରଳ ଶୁଦ୍ଧ ଅବଚେତନ ସ୍ତରରୁ । ସେମାନଙ୍କର ମନୁଷ୍ୟ ପରି ମନ ଜିନିଷଟି ନାହିଁ । ଥିଲେ ସେମାନେ ମନୁଷ୍ୟକୁ ଆହୁରି ଭବିଷ୍ୟତର ବହୁ ସନ୍ଦେଶ ଦେଇ ପାରୁଥାନ୍ତେ । କବିର ମନ ଅଛି ଏବଂ ତାଙ୍କର ଅବଚେତନ ଅବସ୍ଥାରେ ସେ ଭବିଷ୍ୟତର ସଙ୍କେତ ପାଆନ୍ତି । ଏବଂ ତାହାକୁ ସ୍ୱୀ ସେ ଭାଷାରେ ପ୍ରକାଶ କରନ୍ତି । ଏହାହିଁ ହେଉଛି ଶାଶ୍ୱତ କବିଙ୍କର ଲକ୍ଷଣ । ବାଞ୍ଛାନିଧି ଜଣେ ଶାଶ୍ୱତ କବି ଥିଲେ । ସେ କୌଣସି ଆନ୍ଦୋଳନରେ କାରାବରଣ କରିନଥିଲେ ବା ତାଙ୍କର ମୃତ୍ୟୁ ବେଳକୁ ଦେଶରେ ସମାଜବାଦର ସ୍ୱର ଉଠି ନଥିଲା । ତଥାପି ସେ ଭବିଷ୍ୟତର ସୂଚନା ସଂଗୀତାକାରରେ ଜନତାକୁ ଦେଇଥିଲେ । ଆଜି ସୁଦ୍ଧା ସେ ସଙ୍ଗୀତର ଝଙ୍କାର କାନେ କାନେ ଗୁଞ୍ଜରି ଉଠୁଛି । ହୁଏତ ତାଙ୍କର 'ପଦ୍ୟାବଳୀ' ଅନେକ ପଢ଼ିନଥିବେ । ତେଣୁ ତାଙ୍କର ତିନୋଟି କବିତାର କିଛି କିଛି ଅଂଶ ଏଠାରେ ଉଦ୍ଧାର କରୁଛି—

କି ହେବ ସେ ସ୍ୱରାଜ୍ୟ ଘେନି,
ଯେବେ ମୋର ନୟନରେ ପେଟ

ଖଟି ଖଟି ମଲେଣି ମୂଲିଆ
ଭୃଷୀ ଚଷି ଦାନା କନା ନଅଣ୍ଟ ।
ଅଧମାଣ ଜମି ଜଣକା
କୋର କରେ ସେ ପୁଣି ଵକା
ଗାଁରେ ସଭିଏଁ କରଜ କରନ୍ତି
ଜଣେ ଦୁଇଜଣ ବନ୍ଧେଇ ସେଠ ।

*　　*　　*

ଜାଗହେ ଜାଗହେ ଜାଗ ପଲ୍ଲିବାସୀ
ଜାଗ ଶ୍ରମଜୀବ ଜାଗହେ
ଜାଗହେ କୃଷକ ଜଗତ ପୋଷକ
ବଞ୍ଚିବାକୁ ନଜେ ଲାଗହେ ॥
ଜଗତେ ସବୁର ସମ ଅଧିକାର
କେ ବଡ କେ ସାନ କେ ପ୍ରଭୁ କାହାର
କେ କାହାର ସାନ୍ତୁ କେ କାହା ଖାତକ
କଏ ଦେବ କାକୁ ଭାଗହେ ॥

*　　*　　*

ସଂପାଦିବା ଲାଗି ଧନୀଙ୍କର ଧନ
ଶାସନ ମନ୍ତ୍ରର କଲେ ସରଜନ
ଅନୀତି ଶାସନ ଅନୀତି ବିଧାନ
ସବୁ ଅନୀତିକୁ ଭାଙ୍ଗହେ ॥

*　　*　　*

ଉଠ ବେଗେ ଜାଗିହେ
ପରାଣେ ଲାଗିବ ଯଦି ପଲ୍ଲି ହିତ ଲାଗି ହେବ
ନଗର ସହର ସୃଷ୍ଟି ପଲ୍ଲୀବାସୀ ଲାଗିହେ,
ସେହି ପଲ୍ଲିବାସୀ ଆଜ ମହା ଦୁଃଖଭାଗୀ ହେ
ଭୃଷୀ ଭୃଷ କରେ ଖଟି ହିନଗତି ହେ
ଧନୀ ମହାଜନେ ଲୋଟି ତାର ଫଳ ଭୋଗୀ ହେ ।

*    *    *

ଅବଶ୍ୟ ଏସବୁ ଗାନ୍ଧିଚିନ୍ତାଧାରା ଅନ୍ତର୍ଭୁକ୍ତ । ଗାନ୍ଧିଜୀ ସ୍ୱାଧୀନତା ଆନ୍ଦୋଳନ ସହିତ ଯେଉଁ ସାମାଜିକ ଓ ଅର୍ଥନୈତିକ ସଂସ୍କାରକୁ ମିଶାଇ ଦେଇଥିଲେ ତାହାହିଁ କବିଙ୍କ ଲେଖନୀରୁ ପ୍ରକାଶ ପାଉଛି । ତାହାହିଁ ଆଜି ସମାଜବାଦର ପ୍ରତିଷ୍ଠା ପାଇଁ ମୂଳ ଭିତ୍ତି ପ୍ରସ୍ତୁତ କରିଛି ।

୧୯୨୧ରେ ବିଦେଶୀ ବସନ ବର୍ଜନ ଓ ଆନୁଷ୍ଠାନିକ ଭାବେ ବିଦେଶୀ ବସନ ଦହନ କାର୍ଯ୍ୟକ୍ରମ ଥାଏ । ସ୍ତୂପାକାରରେ ବିଦେଶୀ ଲୁଗା ସଂଗ୍ରହ କରି ସେଥିରେ ଅଗ୍ନି ସଂଯୋଗ ପୂର୍ବରୁ ବାଞ୍ଛାନିଧିଙ୍କ କୀର୍ତ୍ତନ ବୋଲି ଦଳେ ସେହି ସ୍ତୂପ ଚାରିପାଖେ ବୁଲିଲେ ।

ତେଜ ତେଜ ଭାଇ ବିଦେଶୀ ବସନ ହେ ।

ସ୍ତୂପରେ ଅଗ୍ନି ସଂଯୋଗ କରି ଦିଆହେଲା । କୀର୍ତ୍ତନର ଉନ୍ମା-ଦନାରେ ଜଣେ ନିଆଁ ଭିତରକୁ ପଶିଗଲେ ଓ ତାଙ୍କୁ ଟାଣିଆଣିବାକୁ ହୋଇଥିଲା ।

ବାଲେଶ୍ୱର ଠାରୁ ବାରମାଇଲ ଦୂର ଇଞ୍ଚୁଡ଼ି ଘାଟ ଠାରେ ଲୁଣ ମାରିବା ପାଇଁ ଶହ ଶହ ନରନାରୀ ବାଳକ ବାଳିକା ଚାଲୁଛନ୍ତି ଶୋଭାଯାତ୍ରାରେ—ଆକାଶ ଭେଦି ସ୍ୱର ଉଠୁଛି ବାଞ୍ଛାନିଧିଙ୍କ ସେହି ଅମର ସଂଗୀତ—

ଗାଅ ସ୍ୱାଧୀନ ଭାରତ, ସ୍ୱାଧୀନ ଭାରତ,
ସ୍ୱାଧୀନ ସ୍ୱାଧୀନ ସ୍ୱାଧୀନ ହେ,
ଗାଅ ସାଗର ଭୂଧର ଅମ୍ବର ଚୁମ୍ବିତ
ନୀଳ ହିମାଚଳ ଗିରିବର କମ୍ପିତ
ସ୍ୱାଧୀନ ସ୍ୱାଧୀନ ସ୍ୱାଧୀନହେ

ଏ ସଙ୍ଗୀତ ସେତେବେଳେ ଶୁଣି ପଣ୍ଡିତ ନୀଳକଣ୍ଠ କହିଥିଲେ "ମୋର ରୋମାଞ୍ଚ ଜାତ ହେଉଛି ।"

କଟକରେ ପ୍ରାଦେଶିକ ସମ୍ମିଳନୀ । ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟ ସଭାପତି । କନିକା ଅଭ୍ୟାଗତ ଗୃହଥାଏ । ବାଞ୍ଛାନିଧିଙ୍କ ସଙ୍ଗୀତ ବୋଲା ହେଲା—

କେତେ ଦିନ ଆଉ ଦୁଃଖିନୀ କନକା
ଅମିତ ଯାତନା ସହିବ
ଦୁଃଖ ସହିବାକୁ ଦୁଃଖିନୀ ଲଲାଟେ
ଲିଖିଥିଲ କି ଗୋ ଦଇବ ॥

\+ + +

କନକା ରଇଜ ଜମିଦାରୀ ଘର
ଏତେ ଅତ୍ୟାଚାର ଏତେ ଅନାଚାର

ହଜାର ହଜାର ଶ୍ରୋତୃ ମଣ୍ଡଳୀଙ୍କ ଆଖିରୁ ଲୁହ ବହିଲା । ଅତ୍ୟାଚାରର ନଗ୍ନ ରୂପ ଯେପରି ସମସ୍ତେ ଆଖି ଆଗରେ ଦେଖୁଛନ୍ତି ଏପରି ହୃଦୟସ୍ପର୍ଶୀ ସେ କବିତା ଥିଲା ।

"ଜିହ ନାମ ଜିହ ମୋତେ
କମା ବାପୁଣୀ ହୋଇଗଲୁ ଏତେ
ପିଗୁପାଡ଼ି ଶାଢ଼ି ତୁ ପିନ୍ଧିଲୁ
ଭାଇ ଭଉଣୀଙ୍କୁ ଭୋକେ ରଖିଲୁ ॥

ଗୀତ ଗାଇ ସ୍ୱେଚ୍ଛା ସେବକମାନେ ଗ୍ରାମେ ଗ୍ରାମେ ବୁଲୁଥିଲା ବେଳେ ଘର-ଭିତରୁ ସ୍ତ୍ରୀ ଲୋକେ ବିଦେଶୀ ଲୁଗା ପୋଡ଼ିଦିଅନ୍ତି—ଅଦ୍ଭୁତ ସେ ସଂଗୀତର ପ୍ରଭାବ । ସେ ସମୟକୁ ଯେପରି କବି ସଂଗୀତର ମୂର୍ଚ୍ଛନାରେ ଭସାଇ ଦେଇଛନ୍ତି । ଏହିପରି ମନେ ହେଉଥାଏ ।

ସମୟର ପ୍ରତୀକ ଥିଲେ କବି ବାଞ୍ଛାନିଧି । ଜନତାର ଭାବରେ ରୂପ ଦେଇ ସେ ସଂଗୀତ ରଚନା କରିଥିଲେ । ସାର୍ଥକ କବି ବାଞ୍ଛାନିଧି ଇତିହାସରେ ଅମର ହୋଇ ରହିବେ ।

ନିଜ ସମ୍ବନ୍ଧରେ କବି ଲେଖିଛନ୍ତି:—

"ମୋର ଭଙ୍ଗା କୁଡ଼ିଆରେ ଭଙ୍ଗା ପଦାଣରେ
ଭଙ୍ଗା କବିତାକୁ ଯୋଡ଼ୁଥିଲି
ମୋର ଭଙ୍ଗା ଜୀବନକୁ କବିତା ଡଙ୍ଗାରେ
ଉଠାଇ ନେବାକୁ ଲୋଡ଼ୁଥିଲି ।

ବାସ୍ତବିକ କବି କେବଳ ନିଜ ଜୀବନକୁ କବିତାରେ ଭସାଇ ଦେଇ ନଥିଲେ । ସେ ବିଶାଳ ଜନତାକୁ ମଧ୍ୟ ତାଙ୍କ ସାଙ୍ଗରେ ଭସାଇ ନେଇ ଯାଇଥିଲେ । ଧନ୍ୟ କବି ବାଞ୍ଛାନିଧି । ଧନ୍ୟ ତମର କବିତାର ପ୍ରତିଭା !!

———

କଟକ

ତା ୨୫।୫।୭୨ରିଖ

ଶ୍ରଦ୍ଧାସ୍ପଦେଷୁ —

ଜାତୀୟ କବି ସମ୍ବର୍ଦ୍ଧନା କମିଟିର ପ୍ରସ୍ତାବ ଓ ତଥ୍ୟ ଚିଠି ପାଇଲି ।

ଯେତେବେଳେ ସେ କବି ଦୁହିଁଙ୍କର କବିତା ଥିଲା ଦେଶ ଓ ଜାତି ପାଇଁ ସଂଜୀବନୀ ମନ୍ତ୍ର । ତାଙ୍କ କଠୋର ସାଧନାର ଫଳ ହିଁ ତାଙ୍କୁ ଚିରସ୍ମରଣୀୟ କରି ରଖିବ । ସେ କବିତା ମାନଙ୍କୁ ସଂକଳନ ଓ ପ୍ରକାଶ କରାଗଲେ, ତାହା ଅମୂଲ୍ୟ ସମ୍ପଦ ହୋଇ ରହିବ ଏବଂ ତାଙ୍କପାଇଁ ତାହାହିଁ ସଂବର୍ଦ୍ଧନା ଓ ସମ୍ମାନ ହେବ ।

ରମାଦେବୀର
ନମସ୍କାର

ଶ୍ରୀ ଚନ୍ଦ୍ରଶେଖର ମହାପାତ୍ର
ସଂପାଦକ
ଜାତୀୟ କବି ସଂବର୍ଦ୍ଧନା କମିଟି,



# ଜାତୀୟ ଜୀବନର ଦୁଇଟି ଜ୍ୟୋତି

● ସୁରେନ୍ଦ୍ରନାଥ ଦ୍ୱିବେଦୀ

ଓଡ଼ିଶାର ସ୍ୱାଧୀନତା ସଂଗ୍ରାମର ଧାରାବାହିକ ଇତିହାସ କେହି ଆଜପର୍ଯ୍ୟନ୍ତ ଲେଖିନାହାଁନ୍ତି। ସ୍ୱାଧୀନତା ପ୍ରାପ୍ତିର ୨୫ବର୍ଷ ପରେ ଏବେ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ସମ୍ମାନିତ କରିବାର ଉଦ୍ୟମ ହେଉଛି। ବିଳମ୍ବରେ ହେଲେ ମଧ୍ୟ ଏକ ଜାତୀୟ କର୍ତ୍ତବ୍ୟ ପୂରଣରେ କିଛି ଉଦ୍ୟମ ହେଉଛି ବୋଲିବାକୁ ହେବ। ଯେଉଁ ଦେଶକୁ ଯାଅ, ପ୍ରଥମେ ନେଇ ଯାଆନ୍ତି ସ୍ୱାଧୀନତା ସଂଗ୍ରାମର ସ୍ମୃତି ଆକାଶକୁ। କୌଣସି କୌଣସି ଦେଶରେ ଏଭଳି ବ୍ୟବସ୍ଥା ରହିଛି ଯେ ଜଣେ ଯଦି ୨୪ଘଣ୍ଟା ସମୟ ଦେଇ ଏଭଳି ସୁରକ୍ଷିତ ସ୍ଥଳଗୁଡିକରେ ଅଧ୍ୟୟନ କରିବ, ସେଥିରେ ସେ ଉକ୍ତ ଦେଶର ସ୍ୱାଧୀନତା ସଂଗ୍ରାମର ପୂର୍ଣ୍ଣ ବିବରଣୀ ପାଇ ଯାଇ ପାରିବ। ଯୁଗୋସ୍ଲୋଭିଆର ସଂଗ୍ରାମୀଙ୍କ ସ୍ମୃତି ସ୍ଥଳରେ ବୁଲି ଆସିଲେ ଏବଂ ବିଭିନ୍ନ ସମୟରେ ପାର୍ଟିଜାନ (Partisan) ମାନେ କିଭଳି ସାହସ ଦେଖାଇଛନ୍ତି ଓ ବିଦ୍ରୋହର ସମ୍ମୁଖୀନ ହୋଇଛନ୍ତି, ଦେଖିଲେ ରୋମାଞ୍ଚ ଜାତ ହୁଏ। ଏହା ଜାତିର ଗୌରବ—ଏହି ସ୍ମୃତି ପଛରେ ରହିଛି ଗର୍ବ ଓ ବିଜୟପ୍ରାପ୍ତିର ଉଲ୍ଲାସ।

ସ୍ୱାଧୀନତା ପ୍ରାପ୍ତି କେବଳ ରଣାଙ୍ଗନରେ ହୁଏ ନାହିଁ କିମ୍ବା କୌଣସି ଜାତିର ଅଭିବୃଦ୍ଧି ଐନ୍ଦ୍ରଜାଲିକ ଢ଼ଙ୍ଗରେ ହୋଇଯାଇ-ପାରେନା। ଜାତୀୟ ଭାବନାର ଉଦ୍ରେକ ନ ହେଲା ପର୍ଯ୍ୟନ୍ତ ଜାତି ସଂଗ୍ରାମ ଲାଗି ପ୍ରସ୍ତୁତ ହୋଇ ପାରେନା। ସେଥିଲାଗି ଯୁଗେ ଯୁଗେ ଭାବଧାରା ଓ ଆଦର୍ଶହୀଁ ମଣିଷ ସମାଜ ଉପରେ ପ୍ରଥମେ ପ୍ରଭାବ ବିସ୍ତାର କରିଛି ଏବଂ ସମାଜରେ ଏକ ଭାବଧାରା ଜନମନରେ ଚଞ୍ଚଳତା ଓ ଅସ୍ଥିରତା ସୃଷ୍ଟି-କଲେ ତାହା ଅହିଂସା ବା ସଶସ୍ତ୍ର ସଂଘର୍ଷର ସୂତ୍ରପାତ କରିଛି।

ଏହି ହିସାବରେ ଦେଖିଲେ ସ୍ୱର୍ଗୀୟ ବାଞ୍ଛାନିଧି ମହାନ୍ତି ଓ ଜାତୀୟ କବି ବୀରକିଶୋର ଦାସଙ୍କର ଜାତୀୟ ଜୀବନକୁ ଦାନ ଅତୁଳନୀୟ।

ବାଞ୍ଛାନିଧିବାବୁ ଥିଲେ ରଚୟିତା ଓ ଗାୟକ । ଓଡ଼ିଶା ସ୍ୱାଧୀନତାର ପ୍ରାରମ୍ଭିକ ଅଧ୍ୟାୟ ହେଉଛି ଅତ୍ୟାଚାରୀ ଜମିଦାର ଶୋଷଣରୁ ମୁକ୍ତି; ନିର୍ମମ ଦମନ ଓ ଅକଥନୀୟ ଶୋଷଣ ବିରୁଦ୍ଧରେ ସଂଗ୍ରାମ । ବାକ୍ ସ୍ୱାଧୀନତା ନଥାଏ କିମ୍ବା ଆଜିକାଲି ପରି ଅବାଧ ସଭା ସମିତି କରିବାର ସୁଯୋଗ ନ ଥାଏ । ତଥାପି ଜନସାଧାରଣଙ୍କ ଭିତରେ ଏ ଭାବଧାରା ସୃଷ୍ଟି କରିବାକୁ ହେବ । ବଙ୍ଗଳାରେ ମୁକୁନ୍ଦ ଦାସଙ୍କ ଯାତ୍ରାଦଳ ଅଲୌକିକ ଭାବରେ ଲୋକମନକୁ ଆକର୍ଷଣ କରିଥିଲା ଏବଂ ସେମାନଙ୍କ ଭିତରେ ଜାତୀୟ ଚେତନା ଜାଗ୍ରତ କରାଇଥିଲା, ସେହିଭଳି ଏକ ପରିକଳ୍ପନା ନେଇ ବାଞ୍ଛାନିଧିବାବୁ ଗୀତ ରଚନା ଆରମ୍ଭ କରିଥିଲେ । ତାହାର କ୍ରମେ ନମତକାଶ ହେଲା ସ୍ୱାଧୀନତା ସଂଗ୍ରାମ ଯେତେବେଳେ ପ୍ରତ୍ୟକ୍ଷ ସଂଗ୍ରାମର ରୂପ ଧାରଣ କଲା ଏବଂ ବ୍ରିଟିଶ ଶାସନ ଶକ୍ତି ସହ ମୁକାବିଲା କରିବା ନିମନ୍ତେ ସାରା ଦେଶ ମାତି ଉଠିଲା, ସେତେବେଳେ କବି ବାଞ୍ଛାନିଧିଙ୍କ ସଂଗୀତ ସେହିଭଳି ତୀକ୍ଷ୍ଣ ହେବାକୁ ଆରମ୍ଭକଲା । ତାଙ୍କର ରଚନା ଯେଉଁଭଳି ଭାବବ୍ୟଞ୍ଜକ, ଗାନ ଓ ସୁର ସେହିଭଳି ଚିତ୍ତାକର୍ଷକ ଓ ହୃଦୟଗ୍ରାହୀ । ରେକର୍ଡରେ ସେ ଯେଉଁ "ମୁଁ ଯେବେ ମନ୍ତ୍ରୀ ହେବି, ଜୀବନ ମୋହର ଧନ୍ୟ ହେବ ।" ଗୀତ ଦେଇଥିଲେ, ଆଜିକୁ ଶୁଣିଲେ ସମୟୋପଯୋଗୀ ମନେହେବ । ମୋର କାଲିପରି ମନେ ପଡ଼ୁଛି ୧୯୩୦ ମସିହା ମାର୍ଚ୍ଚ ୧୨ତାରିଖରେ ଯେଉଁଦିନ ଗାନ୍ଧିଜୀ ଲୁଣ-ମାରିବା ନିମନ୍ତେ ଡାଣ୍ଡି ପଦଯାତ୍ରା ଆରମ୍ଭ କଲେ ସେଦିନ ସେ କାଠଯୋଡ଼ି ନଈ ବାଲିରେ ଯେଉଁ "ଦେଖ, ଧୀରେ ଧୀରେ ଧୀର ସମୀରେ ଉଡ଼େ ଜାତୀୟ ପତାକା ଆଜି" ଗାନଟି କରିଥିଲେ, ତାହା କିଭଳି ସ୍ପନ୍ଦନ ଜାତ କରାଇଥିଲା । ବେଳ ବୁଡ଼ି ଆସୁଛି, ନଈ ଭିତରର ଦକ୍ଷିଣା ପବନ ଘୁ' ଘୁ' ହୋଇ ବହୁଛି ଏବଂ ଜାତୀୟ ପତାକାଟି ପୋତା, ବାଉଁଶରେ ଲାଗି ପବନରେ ତାଳ ମିଶାଇ ଫର ଫର ହୋଇ ଉଡ଼ୁଛି । ସେତେବେଳେ କବିଙ୍କର ଏଇ ସମୟୋପଯୋଗୀ ସଂଗୀତଟି କିଭଳି ପ୍ରାଣସ୍ପର୍ଶୀ ହୋଇଥିବ ଅନୁମାନ କରାଯାଇ ପାରେ । ମତେ ବେଳେ ବେଳେ ବିରକ୍ତି ଲାଗେ ତାଙ୍କର ଆଉ ଗୋଟିଏ ସୁନ୍ଦର ସଙ୍ଗୀତରେ 'ପତାକା ଜାତିର ଜୀବନ, ପରାଣ ଭୁବନରେ'କୁ ଆମ କଟକ ରେଡ଼ିଓରେ ଯେଉଁଭଳି ବିକୃତ ସ୍ୱରରେ ଗାନ କରାଯାଏ ତାହା ଶୁଣି । ତାଙ୍କର ଆଉ ଏକ ସଙ୍ଗୀତ କେବଳ ଓଡ଼ିଶା ଭିତରେ ସୀମାବଦ୍ଧ ନ ରହି ଭାରତୀୟ ଆଦର ପାଇଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ତାହା ହେଉଛି "ସ୍ୱାଧୀନ ଭାରତ, ସ୍ୱାଧୀନ ଭାରତ, ସ୍ୱାଧୀନ, ସ୍ୱାଧୀନ,

ସ୍ୱାଧୀନରେ" ସଙ୍ଗୀତଟି । ଗାନଟି ପୂର୍ଣ୍ଣଭାବରେ ସଂସ୍କୃତ ଶବ୍ଦାବଳୀରେ ପରିପୂର୍ଣ୍ଣ । ଥରେ କଂଗ୍ରେସ ଅଧିବେଶନ ସମୟରେ ଗୁଜୁରାଟ କି ମଧ୍ୟ-ପ୍ରଦେଶ କେଉଁଠି ମୋର ଠିକ୍ ସ୍ମରଣ ନାହିଁ-ସବୁ ପ୍ରଦେଶର ସଂଗୀତ ବୋଲାଯାଉଥିବା ବେଳେ ଆମେ ଓଡ଼ିଆ ଡେଲିଗେଟ ମାନେ ଯେତେ-ବେଳେ ଏହି ସଂଗୀତଟି ଗାଇ ବୁଲିଲୁ ବୋଧହୁଏ ପଞ୍ଜାବ ଛଡ଼ା ଭାରତର ସବୁ ଅଞ୍ଚଳର ଲୋକେ ଏହାକୁ ବୁଝି ପାରିଲେ । ଖାଲି ସେତିକି ନୁହେଁ, ସମସ୍ତେ ସଂଗୀତ ପରି ଏହା ଗାଇବାକୁ ମଧ୍ୟ ଆରମ୍ଭ କରିଥିଲେ । ତେଣୁ ବାଞ୍ଛାନିଧିବାବୁଙ୍କ ସଂଗୀତ, ସୁର ଓ ଗାନ ଯାହାକୁ କହନ୍ତି classes ଓ masses ସମସ୍ତଙ୍କର ଆଦୃତ ହୋଇଥିଲା । ପରିତାପର ବିଷୟ ଯେ ଏଭଳି ପ୍ରତିଭାବାନ୍ ବ୍ୟକ୍ତି ଦୀର୍ଘାୟୁ ପାଇ ନ ଥିଲେ ଏବଂ ପରବର୍ତ୍ତୀ ଜାତୀୟ ଜୀବନର ଗଠନର ବିକାଶ ଦେଖିବାର ସୁଯୋଗରୁ ବଞ୍ଚିତ ହେଲେ ।

ଜାତୀୟ କବି ବୀରକିଶୋରଙ୍କ ବର୍ତ୍ତମାନ ସୁଦ୍ଧା ଜୀବିତ, ମାତ୍ର କ୍ଷୀଣ, ଦୁର୍ବଳ ଓ ବୃଦ୍ଧ ଶରୀର ନେଇ ଯାତନା ପାଉଛନ୍ତି, ଝଡ଼ିବାଲାଗି କେତେବେଳେ ! ଦୀର୍ଘାୟୁ ହୁଅନ୍ତୁ ଆମର ଏହା କାମନା । କାରଣ ଦେହ ଅବଶ ହୋଇ ଆସୁଛି ସତ, ମନ ସେହିପରି ସତେଜ ଓ କଲମ ସେହିଭଳି ତୀକ୍ଷ୍ଣ ରହିଛି । ସେ ଲେଖିଥିଲେ ଅନେକ ପ୍ରାୟ ୪୨ ବର୍ଷ ତଳେ—

"କବି, ବାଜେ କବିତା ବନ୍ଦକର, କମାଣ ଧରିଏ କଲମ ,
ଧର, ଥରେ ବଜା ନବ ସମର ଭେରୀ, ତରୁଣ ଯେତେ
ସେହି ସଂକେତେ ଆସନ୍ତୁ ଚୋଟେ ଦର୍ପେ ଘେରି ।"

ଜାତୀୟ କବି ବୀରକିଶୋରଙ୍କର ଏହି ଆହ୍ୱାନକୁ ସେ ନିଜ ଜୀବନରେ ଚରିତାର୍ଥ କରିଛନ୍ତି । ରାଷ୍ଟ୍ରର ଅଗ୍ରଗାମୀ ଯାତ୍ରାପଥର ଯେ କୌଣସି ବିଶିଷ୍ଟ ଘଟଣା ଏବେ ବି ତାଙ୍କ ଦୃଷ୍ଟିରୁ ହଟିନାହିଁ ଏବଂ ସେ ଅତି ସରଳ, ସହଜ ଭାଷାରେ ସଂଗୀତ ଯୋଡ଼ି ସେ ବିଷୟରେ ଲେଖି ବୁଲିଛନ୍ତି । କବି ନଜରୁଲଙ୍କ ପରି ସେ ଆମ ଜାତୀୟ ଜୀବନରେ ଅମର ହୋଇ ରହିବେ । ବହୁଲୋକ କାରାବରଣ କରିଛନ୍ତି ସ୍ୱାଧୀନତା ସଂଗ୍ରାମରେ, ବୀରକିଶୋର ବି ୧୯୨୧ ମସିହାରୁ ଜଣେ ସ୍ୱରାଜ୍ୟ ସୈନିକ । ମାତ୍ର ତାଙ୍କର 'ବିଦ୍ରୋହୀ ବୀଣା' ନାମକ କ୍ଷୁଦ୍ର ସଂଗୀତ ପୁସ୍ତିକା ନିମନ୍ତେ ରାଜଦ୍ରୋହ

ଦଫାରେ ଅଭିଯୁକ୍ତ ହୋଇ ସେ କାରାବରଣ କରିଥିଲେ । ଏହାଠାରୁ ବଳି ବଡ଼ ସମ୍ମାନ ଆଉ ଅଧିକ ତାଙ୍କୁ କଣ ମିଳନ୍ତା ଏବଂ ଯେଉଁ ଅଭିନନ୍ଦନ ବର୍ତ୍ତମାନ ବ୍ୟବସ୍ଥା ହେଉଛି, ତାହା କଣ ଅଧିକ ହେବ ! ସେହିଦିନୁ ବୀରବାବୁ 'ଜ.ଯେ.ପୁ.-କବି' । ଏହାକୁ କେହି ସରକାରୀ ଉପାଧି କାରୀ କିମ୍ବା କୌଣସି ସଂଗଠନ ଉପାଧି ଭାବରେ ଦାନ କରିନାହିଁ । ଏହା ଆପଣାଛୁଏଁ ଠିକଣା ଯାଗାରେ ଉପଯୋଗ କରାଯାଇଛି । ତାଙ୍କର "ଅରି ଫେରିନାହିଁ, ଯୁଦ୍ଧ ସରି ନାହିଁ, ଆସ ମୋ ଶିବିରେ ଆସ ଭାଇ"ଗାନର ଆଜି ବି ତାତ୍ପର୍ଯ୍ୟ ରହିଛି । ୧୯୩୧ ମସିହାରେ ଗାନ୍ଧି-ଇରଉଇନ ଚୁକ୍ତି ଫଳରେ ଯେତେବେଳେ ରାଜବନ୍ଦୀମାନେ ଖଲାସ ହୋଇ ଆସିଲେ ଏବଂ ଗ୍ରାମଆଡ଼େ ବିଜୟ ଉତ୍ସବ ପାଳନ କରା ଯାଉଥିଲା, ସେତେବେଳକାର ବୀରବାବୁଙ୍କର ଏକ ଗାନ—

"ଆମେ ହୋଇ ତ ନଥିଲୁ ଦରବାରୀ,
ଆମ ହାତରେ ନ ଥିଲା ତରବାରୀ,
ମହାତ୍ମାଗାନ୍ଧିଙ୍କ ନାମକୁ ସୁମରି ବଢ଼ିଲୁ ନଈକୁ ହେଲୁ ପାରି"

ଏହା ଏକ ଅଲୌକିକ ଭାବ ସୃଷ୍ଟି କରିଥିଲା । ଏହିପରି ବୀରବାବୁଙ୍କର ଅସଂଖ୍ୟ ଲେଖା, କବିତା ଓ ସଙ୍ଗୀତ ରହିଛି; ଆହୁରି ତାଙ୍କ କଲମରୁ ଲେଖା ବାହାରୁ ଥାଉ—କଲମ ସତେଜ ରହୁ, ଏହାହିଁ ଆମର କାମନା ।

ମୁଁ ମୋର ଶ୍ରଦ୍ଧାଞ୍ଜଳି ବାଞ୍ଛାନିଧିବାବୁଙ୍କୁ ଏବଂ ଭକ୍ତି ଓ ସମ୍ମାନ ବୀରବାବୁଙ୍କୁ ଅର୍ପଣ କରୁଛି ।



# ଅମୃତ ଅନୁଭବ

● ଅନ୍ନପୂର୍ଣ୍ଣା ମହାରଣା

୧୯୨୪ ମସିହା । ଉତ୍କଳମଣି ଗୋପବନ୍ଧୁ, ଶ୍ରୀଯୁକ୍ତ ଭାଗୀରଥି ମହାପାତ୍ର, ସ୍ୱଗତଃ ଡକ୍ଟର ଏକରାମ୍ ରସୁଲ୍ ଜେଲରୁ ଖଲାସ ହୋଇ ଆସିବା ବେଳ । କଟକରେ ଉତ୍କଳ ସମ୍ମିଳନୀର ଅଧିବେଶନ ହେଉଥାଏ । ସେ ଯୁଗକୁ ଗୃହିଁ ବିରାଟ ଆୟୋଜନ ।

ସେହି ସମ୍ମିଳନୀରେ ବାଞ୍ଛାନିଧି ବାବୁଙ୍କ ଗୀତ ବୋଲା ହେଲା—

ଭାରତ ମୋ ମାଆ

ସେ ଜ୍ଞାନ ସେ ଧ୍ୟାନ ସେ ମୋ ଗରିମା ।

ତାଲାଗି କାନ୍ଦ ତା କୋଳବାସୀ ସହସ୍ର ସହସ୍ର ହେଲେ କାରାବାସୀ

ସୁଯୋଗେ ଅସହଯୋଗ ପ୍ରକାଶି ଦେଲେ ମହାତ୍ମା । × ×

ଆଉ ଗୋଟିଏ ତାଙ୍କ ରଚିତ ଗୀତ ବୋଲା ହୋଇଥିଲା—

କେତେ ଦିନ ଆଉ ଦୁଃଖିନୀ ଜନନୀ ଅମିତ ଯାତନା ସହିବ !

ଦୁଃଖ ସହି ସହି ଜନନୀ ରମଣୀ

ଅହଲ୍ୟା ସଦୃଶ ହୋଇଲା ପାଷାଣୀ

ହୋଇଥାନ୍ତା ଯଦି ମହୀଶୂର ଜୟପୁର କି ଧ୍ୱଅନ୍ତା କଏ କହିବ !

ସେ ଯୁଗରେ କଟକରେ ମୋ ଜାଣିବାରେ ଏକମାତ୍ର ସଙ୍ଗୀତ ଶିକ୍ଷକ ଥିଲେ ପୂଜ୍ୟପାଦ ଓସ୍ତାଦଜୀ ଖାଁ କୁମିଆଁ । ଓଡ଼ିଶାରେ ଝିଅମାନଙ୍କୁ ଆଜିକାଲିକା ଭଳି ନାଚଗୀତ ଶିଖାଇବାଟାକୁ ଲୋକେ ବିଶେଷ ପସନ୍ଦ କରୁ ନଥିଲେ । 'ସଲଜ୍ଜ ବଜାଏ, ନିର୍ଲ୍ଲଜ୍ଜ ଗାଏ, ଅତି ବେହିୟା ନାଚ ନାଚ ଯାଏ' ଥିଲା ସେ ବେଳର ପ୍ରଚଳିତ ଲୋକୋକ୍ତି । ସେଥିପାଇଁ ଅତି ଅଳ୍ପ ପରିବାରର ଝିଅ ଓସ୍ତାଦ୍‌ଜୀଙ୍କଠାରୁ ଗୀତ ଶିଖୁଥାନ୍ତି । ସ୍ୱର୍ଗୀୟ ଶ୍ରୀକୃଷ୍ଣ ମହାପାତ୍ର, ସ୍ୱର୍ଗୀୟ ମୋହିନୀ ମୋହନ ସେନାପତି, ସ୍ୱର୍ଗୀୟ ଲକ୍ଷ୍ମୀନାରାୟଣ ପଟ୍ଟନାୟକ ପ୍ରମୁଖ ଏ ଦିଗରେ ଅଗ୍ରଣୀ ହୋଇଥାନ୍ତି । କିନ୍ତୁ ଜାତୀୟ ସଙ୍ଗୀତ ବୋଲିବାଟା ସେତେବେଳେ ସମସ୍ତଙ୍କ ପାଇଁ ଆକର୍ଷଣୀୟ

ହୋଇ ନ ଥାଏ । ଓସ୍ତାଦ୍‌ଜୀ ଏ ଜାତୀୟ ସଙ୍ଗୀତ ଗୁଡ଼ିକ ମୋତେ ଶିଖାଇ ଥାନ୍ତି । ସେହି ଦିନୁଁ ବାଞ୍ଛାନିଧି ବାବୁଙ୍କ ସଙ୍ଗେ ଯୋଗାଯୋଗ ।

ଏ ଯୋଗାଯୋଗ ବଢ଼ିଗଲା ୧୯୩୦ ମସିହା ଲବଣ ସତ୍ୟାଗ୍ରହ ବେଳେ । ସଭା, ଶୋଭାଯାତ୍ରାରେ ବୋଲିବା ପାଇଁ ସ୍ୱୟଂ ବାଞ୍ଛାନିଧି ବାବୁ ହାରମୋନିୟମ ଧରି ବସିଯିବେ ଆମକୁ ସ୍ୱରଚିତ ଗୀତ ଶିଖାଇବାକୁ । ପ୍ରଥମ ଜାନୁଆରୀ ଛବିଶ ( ସ୍ୱାଧୀନତା ଦିବସ ) ରେ ଲୋକସେବା ପ୍ରେସରେ ନିଜେ ବୋଲିଲେ ତାଙ୍କର ପ୍ରଖ୍ୟାତ ଗୀତ—

ଗାଅ ସ୍ୱାଧୀନ ଭାରତ ସ୍ୱାଧୀନ ଭାରତ ସ୍ୱାଧୀନ ସ୍ୱାଧୀନ ସ୍ୱାଧୀନରେ
ଗାଏ ସାଗର ଭୂଧର ଅମ୍ବର ଚମ୍ପିତ ଭାଲ ହିମାଚଳ ଗିରିବର କମ୍ପିତ
ସ୍ୱାଧୀନ ସ୍ୱାଧୀନ ସ୍ୱାଧୀନରେ

ଗୋଟିଏ ଗୀତ ମନେ ପଡ଼ିବାରୁ ତାଙ୍କର ଶତ ଶତ ସ୍ମୃତି ଆଜି ମନରେ ଜାଗି ଉଠୁଛି । ଲବଣ ସତ୍ୟାଗ୍ରହ ଫଳରେ ୧୯୩୧ ମସିହାରେ ଗାନ୍ଧି-ଆରୱିଇନ ସନ୍ଧି ଯୋଗୁଁ ଭାରତ ବିଜୟ ଗର୍ବରେ ଉନ୍ମତ୍ତ ହୋଇ ଯାଇଥାଏ । ସେହି ମୌସମରେ କରାଚୀରେ ଜାତୀୟ କଂଗ୍ରେସର ବାର୍ଷିକ ଅଧିବେଶନ ହେଲା । ବିଭିନ୍ନ ପ୍ରଦେଶର ଶିବିରରୁ ପ୍ରତିଦିନ ବଡ଼ ଭୋରରୁ ଜାତୀୟ ସଙ୍ଗୀତ ବୋଲା ହୋଇ ପ୍ରଭାତଫେରୀ ବାହାରେ । ଆମ ଓଡ଼ିଶା ଶିବିରରୁ ଆମେ ବୋଲୁ 'ଗାଅ ସ୍ୱାଧୀନ ଭାରତ' ଗୀତଟି । ଗୀତର ଭାଷା ସଂସ୍କୃତ ଗର୍ଭିତ । ସେଥିପାଇଁ ସାରା ଭାରତର ଲୋକେ ଗୀତଟି ବୁଝି ପାରନ୍ତି । ଆମକୁ ଦେଖିବା ମାତ୍ରେ କହନ୍ତି— 'ଗାଅ ସ୍ୱାଧୀନ ଭାରତ' ।

କ୍ରମେ ଆମେ ତାଙ୍କ ପାଖରେ ଅଳିଅଳ ହେବାକୁ ଆରମ୍ଭ କଲୁ । କୌଣସି ସଭା ଶୋଭାଯାତ୍ରା ପାଇଁ ସେ ପୁରୁଣା ଗୀତ ବରାଦ କଲେ, ଆମେ ଅଡ଼ିବସୁ— ନୂଆ ଗୀତ ଲେଖା ନ ହେଲେ ଆମେ ବୋଲିବୁ ନାହିଁ । ଏହି ପିଲାଳିଆ ଅଳିଅଳର ପରିଣତି ସ୍ୱରୂପ କେତେ ସୁନ୍ଦର ସୁନ୍ଦର ଗୀତ ତାଙ୍କ କଲମ ମୁନରୁ ଝରିପଡ଼ି ! ସେହି ମହାନ୍ ଦେଶ-ପ୍ରେମୀଙ୍କ ପ୍ରତି ଆମ୍ଭମାନଙ୍କର ଏ ପ୍ରକାର ଧୃଷ୍ଟତାପୂର୍ଣ୍ଣ ଆଚରଣ କଥା ମନେ ପଡ଼ି ବର୍ତ୍ତମାନ ମନରେ ପଶ୍ଚାତ୍ତାପ ଜନ୍ମୁଛି । କିନ୍ତୁ ଏହି ଅଳିଅଳ ଯୋଗୁଁ ସେ ଲେଖିଥିଲେ—

ରେ ପତାକା ଜାତିର ଗରବ ଜାତିର ଜୀବନ ପବିତ୍ର ଭୂଷିରେ
ଏକତା ପୀରତି ଶାନ୍ତି ମୂରତି ସୁନ୍ଦର ତୋହର ସମ୍ମାନ ନାହିଁରେ
ତୋହର ଲାଗି ଦେଶେ ଦେଶେ
ପୀରତି ହୋଇଛି ବଇରି ଶେଷେ
ତୋହର ଲାଗି ଅଗର ଖଡ଼ଗ ଶରୀର ରକତେ ଦେଲେ ରଞ୍ଜାଇରେ ।

୧୯୩୧ ମସିହାରେ ଉତ୍କଳ ଭାରତୀ କୁନ୍ତଳା କୁମାରୀଙ୍କ ଅଧ୍ୟକ୍ଷତାରେ ବାଲେଶ୍ୱରରେ ମହିଳା ସମ୍ମିଳନୀ ହେଲା । ସୁଚେତାଃ ଜାହ୍ନବୀ ଦେବୀ ଅଭ୍ୟର୍ଥନା ସମିତିର ଅଧ୍ୟକ୍ଷ ହୋଇଥାନ୍ତି । ବାଲେଶ୍ୱରରେ ଅଭୂତପୂର୍ବ ନାରୀ ଜାଗରଣ ଦେଖା ଦେଇଥାଏ । ବାଞ୍ଛାନିଧି ବାବୁ ସେ ସମ୍ମିଳନୀରେ ବୋଲିଲେ—

ଏବେ ଜାଗିବ ନାହିଁକି ?
ଉତ୍କଳ ଲଳନା ସତୀ ବୀରାଙ୍ଗନା
ଜାଗନ୍ତେ, ଜାଗନ୍ତେ, ଜାଗନ୍ତେ
ମାରବେ ରହିଛ କାହିଁକି ?

ମାଇକ୍ ତ ନ ଥାଏ । ସମ୍ମିଳନୀରେ ସ୍ୱଚୀଭେଦ୍ୟ ନୀରବତା ।

ଆଉ ଥରେ ଆମେ ଅଡ଼ ବସିଥିଲୁ ଦୁହିଁଙ୍କ ପାଖରେ । ବୀରବାବୁ ଓ ବାଞ୍ଛାନିଧି ବାବୁ ଦୁହେଁ ଥାଆନ୍ତି । ଦାସେ ଆପଣେଙ୍କ ଶ୍ରଦ୍ଧାଭାଜନ । ଆମେ କହିଲୁ— 'ନୂଆ ଗୀତ ନ ଶିଖାଇଲେ ଆମେ ସେ ଗଡ଼ଗଡ଼ିଆ ଘଟ ଯାଏ ବୋବେଇ ବୋବେଇ ଯାଇ ପାରିବୁ ନାହିଁ । ବାଞ୍ଛାନିଧି ବାବୁ ଶୋଭାଯାତ୍ରା ପାଇଁ ନିଜେ ଗୀତ ଲେଖି ଶିଖାଇଲେ—

ବସି ଅମର ଭୁବନେ ବିମାନ ଅସନେ ସ୍ୱରଗ ପୁରକୁ ସେ ଗଲେହିଁଛି
ଉତ୍କଳ ଭୁବନେ ଭବନେ ଭବନେ ଯାରନାମ ଜପାମାଳା ହୋଇଛି
ଦରିଦ୍ର ହୃଦୟ ଧନ ଅନାଥର ବନ୍ଧୁ
ଉତ୍କଳ ପରାଣ ମଣି ସେହି ଗୋପବନ୍ଧୁ
ଯ ଲାଗି ଅଧୀର ପ୍ରାଣ ହୃଦୟ କାତର
ନୟନୁ ବହଇ ନୀର ସୁମରିବା ମାତର

ସେ ମୁଖ ସେ ହାସ ସେ ମଧୁରରାଗ ମାନସ ପଟ୍ଟେ ଜାଗୁଥିଛନ୍ତି ।
ଶୀରବାବୁ ସଙ୍ଗୀତ ଲେଖିଥିଲେ—
ହେ ଦେବ ! ଆଜ କି ଗୀତ ଗାଇବ !
ତୁମ ଗୁଣ ଗୁଣି ହେ ଉତ୍କଳ ମଣି
ଭାରତ ଭାଗ୍ୟ ଗଢ଼ିବ । + + +

ବାଞ୍ଛାନିଧି ବାବୁ ନିଜେ ଗୀତ ଲେଖି ନିଜେ ସ୍ୱର ସଂଯୋଜନା କରନ୍ତି । ଶୀରବାବୁଙ୍କ ଗୀତ ବୋଲୁଥିଲେ ସ୍ୱର୍ଗତଃ ନିରଞ୍ଜନ ଘୋଷ, ସ୍ୱର୍ଗତଃ ଗିରୀଶବାବୁ, ଶ୍ରୀ ଅଦ୍ୱୈତ ବଲ୍ଲଭ ରାୟ ପ୍ରମୁଖ । ବୈଦ୍ୟନାଥ ପ୍ରଭୃତି ଆମେ ସବୁ ପାଳିଆ । ଆମେ ବୋଇଲେ ‧ବାନର ସେନା ।

ସେ ଯୁଗର ଶୀରବାବୁ ଓ ବାଞ୍ଛାନିଧି ବାବୁଙ୍କ ଜାତୀୟ ସଙ୍ଗୀତ ଲୋକଙ୍କ ମଧ୍ୟରେ ଦେଶପାଇଁ ଜୀବନ ଦେବାକୁ କି ପ୍ରକାର ଉନ୍ମାଦନା ଆଣି ଦେଉଥିଲା, ତାହା ଅନୁଭବୀ ଛଡ଼ା କଳ୍ପନା କରିବା ମୁସ୍କିଲ୍ । ନିରଞ୍ଜନ ବାବୁ ଯେତେବେଳେ ବୋଲୁଥିଲେ—

ଅଭ ଫେରନାହିଁ ଯୁଦ୍ଧ ସଜନାହିଁ
ଆସ ମୋ ଶିବିରେ ଆସ ଭାଇ ! × × ×,
ଭକତ କେ ଅଛୁ ଦେଶ ପୂଜାକର
ରକତ ମନ୍ଦାର ମାଳ ଦେଇ
ତରୁଣ କେ ଅଛୁ ମରଣକୁ ଡାକ
ଦେବତା ପାଖେ ଉଠ ଚେଇଁ ।

ଲୋକେ ଉନ୍ମତ୍ତ ହୋଇ ଯାଉଥିଲେ । କେତେ ଲୋକ ଏ ଗୀତ ଶୁଣି ଜୀବନକୁ ପଣି ଛଡ଼ାଇଥିବେ, ତାର ହିସାବ ନାହିଁ । ହିସାବ ମୁକର ରହିଥାନ୍ତା, ଯଦି ସ୍ୱରାଜ୍ୟ ହାସଲ ହେବା ପରେ ପରେ ସ୍ୱାଧୀନତା ଆନ୍ଦୋଳନର ମୂଲ୍ୟାଙ୍କନ ପାଇଁ ପ୍ରୟାସ ହୋଇଥାନ୍ତା । ବେଳେ ବେଳେ ମୋ ସ୍ଥୂଳ ବୁଦ୍ଧିରେ ଭାବେ—କଥା କଥାକେ କମିସନ ବସି କୋଟି ସଂଖ୍ୟାକୁ ଖରଚ ଗଡ଼ି ଯାଉଛି, ଏଡ଼େ ବଡ଼ ଦେଶର ଏଡ଼େ ବଡ଼ ସ୍ୱାଧୀନତା ସଂଗ୍ରାମର ମୂଲ୍ୟାଂକନ କରିବାପାଇଁ କାହାର ମନ ବଳିଲା ନାହିଁ କାହିଁକି ?

ଯାଉ ସେ କଥା ବ୍ରିଟିଶ କେଶରୀ ସୁଦ୍ଧା ବୀରବାବୁଙ୍କ ଗୀତକୁ ଚମକୁ ଥିଲେ । ତାଙ୍କ ଗୀତରୁ ପଦେ । "ସମ୍ରାଟ ପଦ ରହିଲେ ରହିବ ମସ୍ତିରେ ରହିବେ ନାହିଁଟି କେହି" ପାଇଁ ତାଙ୍କୁ ୧୨୪ ଦଫାରେ ଗିରଫ କରି ଯାଇଥିଲା । ଆଉଥରେ ଫୁଲବାଣୀରେ ବାଲକୁଦା ହରେକୃଷ୍ଣ ବିଶ୍ୱାଳ 'ଡରିବାର ଯିଏ ଡରୁଥାଉ ସିଏ ଆମେ ମରିବାର ହେଲେ ମରିବା' ଗୀତଟି ବୋଲି ତତ୍‌କ୍ଷଣାତ୍ ଗିରଫ ହୋଇ ଜେଲଦଣ୍ଡ ଭୋଗିଥିଲେ ।

କଅଣ ଗୋଟିଏ ଘଟଣା ? ୧୯୩୦ରୁ ୧୯୪୭ ଯେ ସବୁ ଲେଖି ବସିଲେ ପୋଥି ହେବ । ମଝିରେ ମଝିରେ ଆନ୍ଦୋଳନ ଶିଥିଳ ହୋଇ ପଡ଼ିଲେ ବୀରବାବୁ ନୂଆ ନୂଆ ଗୀତ ଲେଖି ଆମ ଅଣ୍ଟାକୁ ଡ଼େର ରଖୁଥିଲେ । ଏହିପରି ପରିସ୍ଥିତିରେ ଥରେ ସେ ଆମକୁ ଗୋଟିଏ ଗୀତ ଲେଖିଦେଲେ ।

ଥପୁଧର ଭାଇ । ଥପୁଧର ତଣ୍ଟ ବାହିନେବ ନାଉରୀ,
ହେଲଣି ଡାକ ସେ ହମାଦ୍, ଶିଖରୁ ଭାରତ କେଶରୀ ।
ହୁଅନାହିଁ ହଲଚଲ ନାବ ହେବ ଟଳମଳ
ନାଉରିଆ ବୋଲକର ଅଂହମା ଆହୁଲ ଧର
ପଇଁତି ଶ କୋଟି ଆମେ ସେ ତ ଏକ ନାବ ପଥାର ।

ରାଜସ୍ଥାନର ଇତିହାସରେ ବର୍ଣ୍ଣିତ ହୋଇଛି ମେବାରର ବୀରତ୍ୱରେ ଚାରଣର ଅବଦାନ । କବି ଭୂଷଣଙ୍କ ସଂଗୀତ ଛତ୍ରପତି ଶିବାଜୀଙ୍କ ଦେହରେ ଶତସିଂହର ବିକ୍ରମ ଆଣି ଦେଇଥିଲା । ବଙ୍କିମଚନ୍ଦ୍ରଙ୍କ 'ବନ୍ଦେମାତରଂ' ଆଜି ସୁଦ୍ଧା ଜାତି ଜୀବନରେ ସ୍ପନ୍ଦନ ଆଣିଦେଉଛି । ଭାରତବର୍ଷର ସ୍ୱାଧୀନତା ଆନ୍ଦୋଳନକୁ ଗୌରବୋଜ୍ଜ୍ୱଳ କରିବାକୁ ସ୍ୱର୍ଗତଃ ବାଞ୍ଛାନିଧିବାବୁ ଓ ପୂଜ୍ୟାସ୍ପଦ ବୀରବାବୁଙ୍କର ଯେଉଁ ଅବଦାନ ରହିଛି, ତାହାର ମୂଲ୍ୟାଂକନ କରିବାକୁ ପାତ୍ରତା ଲୋଡ଼ା ।



# କବି ବାଂଛାନିଧି

● ଶ୍ରୀ ଚକ୍ରଧର ବେହେରା

ସୁନାର ଭାରତ ପରାଧୀନ ଥିଲା
ହୋଇଥିଲା ଛାରଖାର
ଦୂର ଦେଶୁ ଆସି ବିଦେଶୀ ବଣିକେ
ମାଡ଼ି ବସିଥିଲେ ଦ୍ୱାର ।
ଜାତି ମାତା କଣ୍ଠ ହୋଇଥିଲା ରୁଦ୍ଧ
ନେତ୍ର ଝରୁଥିଲା ନୀର
ବଳ ବୀର୍ଯ୍ୟ ଶକ୍ତି ସାହସ ନ ଥିଲା
ନଇଁ ପଡ଼ିଥିଲା ଶିର ।
ସ୍ୱଦେଶ ରୀତି, ସାହିତ୍ୟ, ସଂସ୍କୃତି
କ୍ରମେ ଲଭି ଅଧୋଗତି
କରି ଦେଇଥିଲା ଅନ୍ଧାରେ ଆଚ୍ଛନ୍ନ
ଭାରତ ଜାତି ସନ୍ତତି ।
ବିଦେଶ ରୀତି ବିଦେଶ ସଂସ୍କୃତି
ବିଦେଶୀ ଭାଷା ସାହିତ୍ୟ
ଆମ ଜାତି ନବ ଶିକ୍ଷିତ ମଣ୍ଡଳେ
କରୁଥିଲା ପୌରୋହିତ୍ୟ ।
ଚିର ପରାଧୀନ କରି ରଖିବାକୁ
ଆମ ଦେଶ ଆମ ଜାତି
କଳ କଉଶଳ କରି ନାନା ମତେ
ଶାସକେ ଗଢ଼ିବେ ନୀତି ।
କବି, କଳାକାର, ଶିଳ୍ପୀ, କାରିଗର
ଜ୍ଞାନୀ, ମାନୀ, ଧନୀ ଜନେ
ନେଲେ ବଶ କରି ପୋଷାଶ୍ୱାନ ପରି
ସ୍ୱାର୍ଥର ପ୍ରଲୋଭନେ ।

ଜାତି ମୁକତିର — ସ୍ୱଦେଶ ପୀରତି
ଶିକ୍ଷା ଦୀକ୍ଷା ଧ୍ୟାନ ଗତି
ଭାଷା, ଭାବଧାରା, ବଂଶ ପରମ୍ପରା
ଦୃଢ଼ରକ୍ଷା, ଧର୍ମବୃତ୍ତି—
ମହା କଂପନରେ ଉପୁଜିଲା ଯେବେ
କମ୍ପାଇ ସାରା ମେଦିନୀ
ଧର୍ମେ ଗ୍ଲାନି ପୁଣି, ଅଧର୍ମ ଉତ୍‌ଥାନେ
କଂପିଲା ଭୁବନ ତିନି ।
ସତ୍ୟ ଧର୍ମ ନ୍ୟାୟ ଅହିଂସା ମନ୍ତ୍ରର
ଜାଗ୍ରତ ମୂର୍ତ୍ତି ଧରି ।
ଅବତୀର୍ଣ୍ଣ ହେଲେ, ଯୁଗେ ଯୁଗେ ଯେହ୍ନେ
ଆସିଥାନ୍ତି ମର୍ତ୍ତ୍ୟ ହରି ।
ଏ ଭାରତ ବର୍ଷେ ଅବତାର ହେଲେ
ମହାତ୍ମା ମୋହନ ଗାନ୍ଧି
ଦେଶ ମୁକ୍ତି ବ୍ରତେ ଚକ୍ର-ଚର୍ଖା ହସ୍ତେ
ସ୍ୱରାଜ୍ୟ କେତନ ବାନ୍ଧି ।
ବଜ୍ର ନିର୍ଘୋଷରେ ସାରା ଭାରତରେ
ଉଠିଲା ଡାକ ଉଚ୍ଛୁଳି—
"ସ୍ୱାଧୀନ ଭାରତ" "ସ୍ୱାଧୀନ ଭାରତ"
ଗାଅ ସବେ ଦେଶେ ବୁଲି ।
ଓଡ଼ିଆ ପରାଣେ ବାଜିଲା ସେ ଡାକ
ଜାଗ୍ରତ ପ୍ରେରଣା ଧରି,
କବି ହୃଦେ ବାଜି ଉଚ୍ଛୁଳାଇ ଦେଲା
ଜାଗ୍ରତ ଗୀତ ଲହରୀ ।
ସେ ଗୀତ ଲହରୀ 'ଇରମ୍ମ' ବାହାରି
ଲଳିତ କରୁଣ ତାନେ
ଜାଗ୍ରତ ବିପ୍ଳବ ସ୍ରୋତ ବୁହାଇଲା
କଠୋର ପାଷାଣ ପ୍ରାଣେ ।
ସାହାରା ମରୁରେ ଖେଳାଇ ହେଲା ସେ
ଜଳୋଚ୍ଛ୍ୱାସ କଳ କଳ

ବାଞ୍ଛାନିଧିଙ୍କର ସେ ଅମର ଗୀତ
ଦେଲା ମନେ ନବବଳ ।
ଗାଇଥିଲେ ସେତ ଦୁଃଖିନୀ କନକା
ଦାରୁଣ ଦୁଃଖ କାହାଣୀ
ଉତ୍କଳ ପ୍ରଦେଶ ସମ୍ମିଳନୀ ପୀଠେ
ନୟନୁ ଝରାଇ ପାଣି ।
ତରଳାଇ ଦେଲା ସେ ସଙ୍ଗୀତ ତାନ
ପରଜନ ମନ ପ୍ରାଣ
ଝରିଲା ଲୋତକ ସରବ ନୟନୁ
ସଭା ହେଲା କମ୍ପମାନ ।
ସେ ଲହରୀ ଖେଳି ଗଗନେ ପବନେ
ଦଗେ ଦଗେ ଗଲା ଭାସି
ଦୁଃଖିନୀ କନକା ପ୍ରଜା ଆନ୍ଦୋଳନ
ବୁଝିଲେ ଭାରତବାସୀ ।
ଗୋଲଟେବୁଲ ପାଲା ଇଂଲଣ୍ଡେ ଲାଗିଲା
କବି ବାଞ୍ଛାନିଧି ପ୍ରାଣେ
ଅଙ୍କି ହୋଇଯାଇ ସେ ପାଲା ସ୍ୱରୂପ
ଫୁଟିଲା ସଙ୍ଗୀତ ତାନେ ।
କଳ୍ପନା, ଜଳ୍ପନା, ସଙ୍ଗୀତ ରଚନା
ଯେତେ କରୁଥିଲେ ସେହି
ଜାତୀୟ ଚେତନା, ଜାତୀୟ ପ୍ରେରଣା
ଉତ୍ସାହ ଉଲ୍ଲାସ ଦେଇ ।
ପରାଧୀନ ଦେଶ ଜନ ମନ ପ୍ରାଣେ
ଉପୁଜାଉଥିଲା କମ୍ପ
ସେଗାନ ବିଦେଶୀ ଶାସନ କଳର
ଭାଙ୍ଗି ଦେଉଥିଲା ଦର୍ପ ।
ଦୁଃଖ ଥିଲା ତାଙ୍କ ଚିର ସହଚର
ନ ହୋଇ ଦୁଃଖେ କାତର
ପ୍ରଫୁଲ୍ଲ ଚିତ୍ତରେ ସହୁଥିଲେ ଦୁଃଖ
ପାଉଥିଲେ ଲୋକାଦର ।

ଯେ ଶୁଣିଛୁ ତାଙ୍କ ମଧୁର ବଚନ
ଶୁଣିବ ସାରା ଜୀବନେ
ଯେ ଦେଖିଛୁ ତାଙ୍କ ସହର୍ଷ ବଦନ
ଆଙ୍କୁଥିବ ମନେ ମନେ ।
ସରଳ ସୁନ୍ଦର ସ୍ୱଭାବ ତାଙ୍କର
ପର ଉପକାର ବ୍ରତେ
ଲାଗି ରହୁଥିଲେ ହିଂସା, ଦ୍ୱେଷ ତେଜି
ସଦା ଲକ୍ଷ୍ୟ ରଖି ସତ୍ୟେ ।
କାନ୍ଦଥିଲେ କେତେ ଯେବେ ସେ ଦେଖିଲେ
ସନ୍ଥ ଚରଣ ଦୁର୍ଦ୍ଦଶା
ନୟନ ଯୋଡ଼ରେ ବାଜଗୁଣ୍ଡା ହସ୍ତେ
ନ ଥିଲେ କେହି ଭରସା ।
କାନ୍ଦଣାରୁ ଫୁଟି ଅମର ସଙ୍ଗୀତ
ବାଡ଼ିଲା ଲୋକେ ଚେତନା
"କେତେଦିନ ଆଉ ଦୁଃଖିଣୀ ଜନନୀ
ସହିବ ଦୁଃଖ ଯାତନା ।
ନ ଦେଖୁଣୁ ସେହି ସ୍ୱାଧୀନ ଭାରତ
ମର ଦେହ କଲେ ତ୍ୟାଗ
ଚାଲି ଯାଇଥିଲେ ଅମର ଭୁବନେ
ହୃଦୟେ ଧରି ବୈରାଗ୍ୟ ।
କେହି ଯେଣୁ ତାଙ୍କୁ ନ ପାରିଲା ଚିହ୍ନି
ନ ଦେଲା ପହିଲି ସ୍ଥାନ
ନେତୃ ମଣ୍ଡଳୀରେ ଅହଙ୍କାର ବଶେ,
ବହି ତେଣୁ ଅଭିମାନ ।
ରଖି ଯାଇଥିଲେ ଅଳଗା ଚିହ୍ନ ସେ
ଜାତୀୟତା ମାତା ବକ୍ଷେ
ସେ ଅମର ଜ୍ୟୋତି ପୂଜା ପାଏ ଆଜି
ରୌପ୍ୟ ଜୁବୁଲିର କକ୍ଷେ ।
ଜାତୀୟ କବିତା କୁସୁମ ଉଦ୍ୟାନେ
ଏକାନ୍ତ ସଦା ବହିବ

ସୁବାସ ଆଦର; ସ୍ୱ ସ୍ୱଭାବୁ ଦେଲେ
ଆବିଳତା ଦୂର କରି ।
ଅନାବିଳ ତାଙ୍କ ଜାତୀୟ ସ୍ୱଭାବେ
ଦେଶ ପ୍ରେମ ଥିଲା ଯେଣୁ
ସେ ସ୍ୱର୍ଗୀୟ କବି ଜୁବୁଲି ଉତ୍ସବେ
ଲଭେ ସମ୍ବର୍ଦ୍ଧନା ତେଣୁ ।

*　　　*　　　*

ଜୁବୁଲି ଉତ୍ସବ ସମ୍ବର୍ଦ୍ଧନା ସଙ୍ଗେ
ଯେଉଁ ମୋର ସମ୍ବର୍ଦ୍ଧନା
ଏହି ସ୍ମରଣିକା ତବ ପଦେ ରଖି
କରୁଛି ତୁମ୍ଭ ଅର୍ଚ୍ଚନା ।
ଭୁଲିନାହିଁ ତବ ଜୀବନ ଚରିତ
ହୃଦୟେ ହୋଇଛି ହାର
କନିକା ବିପ୍ଳବ କ୍ଷେତ୍ରେ କରିଥିଲ
ମୋର ଯେତେ ଉପକାର ।
ବିପଦେ ବନ୍ଧୁ ହେ, ଧୈର୍ଯ୍ୟବଳ ଦେଇ
ବଞ୍ଚାଇ ରଖିଲ ମୋତେ
ଯେତେବେଳେ ମୁହିଁ ଘରଛଡ଼ା ହୋଇ
ଭାସୁଥିଲି ଦୁଃଖ ସ୍ରୋତେ ।
ସେ କଷଣ ସବୁ ତୁମେ ହେ ମୋ ପାଇଁ
ଜବାବନେ କଲ ଜୟୀ
ଊନବିଂଶ ଶତ ସପ୍ତବିଂଶ ଅବ୍ଦେ
ମନେ ବଡ଼ମା ନ ବହି ।
ମୋ' ବନ୍ଦୀ ବିଳାପେ' ତବ ନାମ ଗୁଣ
ପାଇଅଛି ଯଥା ସ୍ଥାନ ।
'ଜୟନ୍ତୀ' ପୁସ୍ତିକା ପରିଚୟ ପତ୍ର
କରୁଛି ତୋ ଗୁଣ ଗାନ ।
କାଳ ମହାଶକ୍ତି କଳିଥିଲା ଯିନା
ତୁମର ମୃତ୍ୟୁ ଦିବସ

କଳି ନପାରିଲା ସେ କରାଳ କାଳ
ତୁମ୍ଭର କୀର୍ତ୍ତି ଯଶ ।
ଅକଳଙ୍କା ସେହି କୀରତି ତୁମ୍ଭର
ଆଜ କି ବର୍ଣ୍ଣିବ ସ୍ୱର
ଏତିକରେ ମୁହିଁ ବିଦାୟ ମାଗୁଛି
ଏ ମର୍ତ୍ତ୍ୟ ଧାମରେ ଥାଇ ।



# ଗଣକବି ବାଂଛାନିଧି

ଗଗନ ମିଶ୍ର

ବାଞ୍ଛାନିଧିଙ୍କର ଆବିର୍ଭାବ ଠିକ ସେତିକିବେଳେ, ଯେତେବେଳେ ଭାରତର ଜାତୀୟ ଚେତନାର ଅଗ୍ନି ଲୁକ୍କାୟିତାବସ୍ଥାରେ ପ୍ରବହମାନ ହେଉଥିଲା । ଦୀର୍ଘ ଦୁଇଶହ ବର୍ଷର ପରାଧୀନତା ଓ ନିର୍ଯ୍ୟାତନା ପରେ ଆକୁମାରୀ ହିମାଚଳ ସ୍ୱାଧୀନତାର ଦୁର୍ଦ୍ଦାନ୍ତ ଉତ୍ତେଜନାରେ ଉତ୍ତପ୍ତ । ତିଳକ, ମୋତିଲାଲ, ଲଜପତରାୟ, ବିପିନ ଚନ୍ଦ୍ର ପାଲ ଓ ଗାନ୍ଧିଙ୍କର ନେତୃତ୍ୱରେ ଉଦ୍ଦାମ ସ୍ୱାଧୀନତାର ସ୍ରୋତରେ ଉଚ୍ଛ୍ୱାସ ପ୍ରକଟିତ ଠିକ ସେତିକିବେଳେ ଯୁବକ ବାଞ୍ଛାନିଧି ସେଥିରେ ଲମ୍ଫପ୍ରଦାନ କରି ସ୍ୱକୀୟ ପ୍ରତିଭା ବଳରେ ଛନ୍ଦମୁଖର ଗୀତି କବିତା ରୂପକ ଲହରି ସଂଯୋଗ କରିଥିଲେ ।

## ଇତିହାସ—

ବାଞ୍ଛାନିଧିଙ୍କର ଜାତୀୟ ଗୀତି କବିତାର ସଂସ୍ପର୍ଶରେ ଆସିବାର ସୁଯୋଗ ମୁଁ ପାଇଥିଲି ୧୯୩୨ ମସିହାରେ । ସେତେବେଳେ ମୁଁ ୬ଷ୍ଠ ଶ୍ରେଣୀର ଛାତ୍ର । ବାଲିଖଣ୍ଡ ମାଇନର ସ୍କୁଲରେ ପଢୁଥାଏ । ହଠାତ୍ ଦିନେ ପ୍ରାୟ ଦୁଇଟା ବେଳେ ଦଳେ ଖଦଡପିନ୍ଧା ଲୋକ ଆସି ଆମ ସ୍କୁଲରେ ପହଞ୍ଚିଲେ । ସେମାନଙ୍କ ମଧ୍ୟରେ ଆମ ଗାଁର ଜଣେ ଦି'ଜଣ ମଧ୍ୟ ଥାଆନ୍ତି । ତାଙ୍କ ମଧ୍ୟରୁ ଜଣେ ହାରମୋନିୟମ୍ ଧରି କେତେକ ଗୀତ ଆବୃତ୍ତି କଲେ ଓ ଅନ୍ୟମାନେ ପାଳିଧରି ଗାଇଲେ । ସାଙ୍ଗେ ସାଙ୍ଗେ ସ୍କୁଲ୍ ଛୁଟି ହୋଇ-ଗଲା ଓ ଘରୁଁ ଘରୁଁ ଶହ ଶହ ଲୋକ ଆସି ସେମାନଙ୍କ ଘୂରପାଖରେ ଜମାହେଲେ । ସେ ଗୀତର କି ମାଧୁରୀ ? କି ଆକର୍ଷଣ ? ଆବାଳବୃଦ୍ଧ-ବନିତା ଯେମିତି ମନ୍ତ୍ରମୁଗ୍ଧ ଆଖିରେ ତାଙ୍କୁ ପିଇଯାଉଥାନ୍ତି । ସେ ଦିନର ଗୀତଥିଲା—

"କି ହେବ ଏ ସ୍ୱରାଜ୍ୟ ଘେନି ଯେବେ ମୋର ନପୂରେ ପେଟ,
ଖଟି ଖଟି ମଲେଣି ମୂଲିଆ କୃଷୀ ଚଷି ଦାନାକନା ନଅଣ୍ଟ" ।

ପୁଣି "ମୁଁ ଯଦି ମନ୍ତ୍ରୀ ହୁଏ ଜୀବନ ମୋର ଧନ୍ୟ ହେବ "ଓ" ଆଛା ଗୋଲ-

ଟେବୁଲ ପାଲା ଲଗିଲାରେ' ଇତ୍ୟାଦି ଇତ୍ୟାଦି । ସତ୍ୟକଥା କହିବାକୁ ଗଲେ ଏ ଗୀତର ମହାନ ସ୍ରଷ୍ଟାଙ୍କୁ ମୁଁ ସେତେବେଳେ ଜାଣି ନ ଥିଲି । ମୋଟେ ଦଶ ବର୍ଷର ପିଲା ମୁଁ । ଅର୍ଥ କିଛି ବୁଝୁ ନ ଥିଲି । କିନ୍ତୁ ସେ ସଂଗୀତର ମାଧୁର୍ଯ୍ୟ ମୋତେ ନିଶ୍ଚିତ ଭାବରେ ମୁଗ୍ଧ କରିଥିଲା ଓ ସେହି ସ୍ରଷ୍ଟାଙ୍କ ପ୍ରତି ମୋତେ ଟାଣି ନେଇଥିଲା ।

ତାହା ପରେ ପରେ ବାଞ୍ଛାନିଧିଙ୍କ ଅନ୍ୟାନ୍ୟ ଅନେକ ଗୀତ ଆମେ ମୁଖସ୍ଥ କରିଥିଲୁ ଓ ସେ ଗୁଡ଼ିକ ଆବୃତ୍ତି କରି ଗାଁ ଗହଳରେ ବୁଲି ଚାନ୍ଦା ସଂଗ୍ରହ କରିଥିଲୁ । ତାଙ୍କର "ଧନ ଜନ ଯୁକ୍ତା ଭାରତମାତା ନମୋ ନମୋ ଜନନୀ ଶ୍ରୀଚରଣେ" ଗୀତଟି ଅନେକ ଡ୍ରାମା ଓ ସଭାସମିତିର ପ୍ରାରମ୍ଭରେ କୋରସ୍‌ରେ ଆମେମାନେ ଗାଇଥିବାର ମୋର ଏବେବି ମନେପଡ଼େ । ଅନେକ ଦିନ ତଳର ଏ ଘଟଣା ସବୁ । କବି ବାଞ୍ଛାନିଧିଙ୍କ ଘର ଆମଗାଁ ପୁରୁଷୋତ୍ତମପୁର ଠାରୁ ମୋଟେ ୭୮ ମାଇଲ ମଧ୍ୟରେ । ତେଣୁ ତାଙ୍କର ସଙ୍ଗୀତର ମୂର୍ଚ୍ଛନା ଯେ ସାବଲୀଳ ଭାବରେ ଆମ ଅଞ୍ଚଳରେ ଝଂକୃତ ହେବ ଏଥିରେ ଆଶ୍ଚର୍ଯ୍ୟ କ'ଣ । କିନ୍ତୁ ଏ ଝଙ୍କାର ଏହି ପରିସରର ବହୁ ଦୂରକୁ ଛୁଟିଯାଇ ସାରା ଓଡ଼ିଶାର ପ୍ରତିପଲ୍ଲି ଓ ଏପରିକି ଓଡ଼ିଶା ବାହାରେ ମଧ୍ୟ ପ୍ରତିଧ୍ୱନି ସୃଷ୍ଟି କରି ଥିଲା । କାରଣ ସେ ସମୟରେ ବିଭିନ୍ନ ଅଞ୍ଚଳର ଯେଉଁ ଭୁଙ୍ଗ ନେତୃବୃନ୍ଦ ଆମ ଗାଁକୁ ମଝିରେ ମଝିରେ ଆସୁଥିଲେ ସେମାନଙ୍କ ଗହଣରେ ଏ ଗୀତର ପଟ୍ଟପ୍ରସାର ଆମେ ଲକ୍ଷ୍ୟ କରୁଥିଲୁ । ତା ଛଡ଼ା ସେ ସମୟର ପ୍ରସିଦ୍ଧ ସଙ୍ଗୀତଜ୍ଞ ତଥା ଯାତ୍ରା ପାଟିର ଓସ୍ତାଦ ଶ୍ରୀ ଗୌରାଙ୍ଗ ଚରଣ ଦାସ ଏବଂ ଇରମର କଂଗ୍ରେସ କର୍ମୀ ଶ୍ରୀ କମଳାକାନ୍ତ କର ଆମ ଗାଁକୁ ସମୟରେ ଆସୁଥିଲେ ଓ ଏମାନେ କବି ବାଞ୍ଛାନିଧିଙ୍କର ଅନ୍ତରଙ୍ଗ ଥିବାରୁ ତାଙ୍କ ସଙ୍ଗୀତ ଚର୍ଚ୍ଚା ବିଭିନ୍ନ ଜାଗାରେ କରୁଥିଲେ । କବି ବାଞ୍ଛାନିଧି ଅତି ଅଳ୍ପ ବୟସରେ ୧୯୩୮ ମସିହାରେ ଦେହ ତ୍ୟାଗ କରିଥିଲେ ମଧ୍ୟ ୧୯୪୨ରେ ସ୍ୱାଧୀନତା ଆନ୍ଦୋଳନର ଚରମ ପରୀକ୍ଷା ସମୟରେ ତାଙ୍କର ଦେଶାତ୍ମବୋଧ କବିତା ଗୁଡ଼ି ସଂଗୀତ ରୂପରେ ଲକ୍ଷ ଲକ୍ଷ ଓଡ଼ିଆ ପ୍ରାଣରେ ଯେଉଁ ଆଶା, ଉନ୍ମାଦନା ଓ ଉତ୍ତେଜନା ସୃଷ୍ଟି କରିଥିଲା ସେଥିରେ ଇରମ ଭଳି ଅତି କ୍ଷୁଦ୍ର ଜାଗାଟିରେ ମଧ୍ୟ ହଜାର ହଜାର ଲୋକ ସଂଗୀନ ମୁହଁରେ ଛିଡ଼ା ହୋଇ ରକ୍ତର ମଶାଲ ଜାଳିଥିଲେ ।

## ଗଣ ସାହିତ୍ୟକ ବାଞ୍ଛାନିଧି

ବାଞ୍ଛାନିଧିଙ୍କ ପଦ୍ୟାବଳୀକୁ ପର୍ଯ୍ୟାଲୋଚନା କଲେ ଜଣାପଡେ ଯେ କବି ବାଞ୍ଛାନିଧି ମହାନ୍ତି ଖାଲି ଯେ ଜାତୀୟ ଆନ୍ଦୋଳନର କବି ଥିଲେ ସେତିକି ନୁହେଁ, ତାଙ୍କର ଭାଷା, ଭାବ, ଜୀବନ, ଚିନ୍ତା ଓ ବିଷୟବସ୍ତୁ ଏତେ ସାବଲୀଳ ଥିଲା ଯେ ତାଙ୍କୁ ଗଣକବି କହିଲେ ଅତ୍ୟୁକ୍ତି ହେବ ନାହିଁ । ଓଡ଼ିଶାର ଯେଉଁ ଯେଉଁ ଲେଖକଙ୍କର ଲେଖାକୁ ଗାଁ ଗହଳର ଅଶିକ୍ଷିତ ଚାଷୀ ମୂଲିଆ ଠାରୁ ସହରର ଶିକ୍ଷିତ ବୁଦ୍ଧିଜୀବୀ ବାବୁଭାୟା ପର୍ଯ୍ୟନ୍ତ ପର୍ଯ୍ୟନ୍ତ ମନେ ରଖିଛନ୍ତି, ତାଙ୍କ ମଧ୍ୟରେ ବାଞ୍ଛାନିଧି ଅନ୍ୟତମ; ଶାରଳାଙ୍କ ରଚିତ ମହାଭାରତ ବାଲ୍ମୀକିଙ୍କ ରାମାୟଣ ଅତିବଡ଼ି ଜଗନ୍ନାଥ ଦାସଙ୍କ ଭାଗବତ ପରି ବାଞ୍ଛାନିଧିଙ୍କ ଲେଖା ଗୁଡ଼ିକୁ ସଂଗୀତ ଆକାରରେ ଅନେକ ଲୋକ ମନେରଖିଥିବେ ବୋଲି ମୋର ବିଶ୍ୱାସ । ହୁଏତ କେତେକ କ୍ଷେତ୍ରରେ ଗୀତର ରଚୟିତାଙ୍କ ନାମ ସେମାନଙ୍କୁ ଜଣା ନଥିବ । ତଥାପି ଗୀତର ମାଧୁରୀ ଓ ଦିଗ୍ ଦର୍ଶନରେ ସେମାନେ ଯେ ମୁଗ୍ଧ ଏଥିରେ ସନ୍ଦେହର ଅବକାଶ ନାହିଁ ।

କବି ବାଞ୍ଛାନିଧି ଥିଲେ ଜଣେ ସଚ୍ଚୋଟ ବିପ୍ଳବୀ । ସାଧାରଣ ମଣିଷର ଜୀବନଯାତ୍ରାକୁ କଷ୍ଟ ଜର୍ଜରିତ କରି ଦେଉଥିବା ତତ୍କାଳୀନ ସାମାଜିକ ଓ ଶାସନତାନ୍ତ୍ରିକ ବିଭିନ୍ନ ଅନୀତି, ଅବ୍ୟବସ୍ଥା, ଅତ୍ୟାଚାର ଜନସ୍ୱାର୍ଥ ବିରୋଧୀ ଓ ସାମନ୍ତବାଦୀ ନୀତି ବିରୋଧରେ ସେ ଯେଉଁ ଉଦ୍ୟମ ଜ୍ୱାଳାମୟୀ ଛନ୍ଦ ମୁଖର କବିତା ଗୁଚ୍ଛରେ ସୃଷ୍ଟି କରିଯାଇଛନ୍ତି ତାହାହିଁ ତାର ଜ୍ୱଳନ୍ତ ନିଦର୍ଶନ । ତେଣୁ କବି ଗାଇଛନ୍ତି — "କି ହେବ ଏ ସ୍ୱରାଜ୍ୟ ହେବ ଯଦି ମୋର ନ ପୂରେ ପେଟ, ଖଟି ଖଟି ମଲେଣି ମୂଲିଆ ଚାଷୀ ଚଷୀ ଦାନା କନା ବିଅଣ୍ଡ । ଅଧମାଣେ ଜମି ଜଣକା କୋରକରେ ସେ ପୁଣି ବିକା, ଗାଁର ସଭିଏ କରଜ କରନ୍ତି, ଜଣେ ଦୁଇଜଣ ବସିଛନ୍ତି ସେଠ ।" ଏବେ ଭଲ ମନ୍ତ୍ରଣା ଲଗିଲା ମନ୍ତ୍ରୀ ସଭାରେ (ଧ୍ରୁବ)

*　　　　*　　　　*

ଉଠ୍ ଅଫିମ ମଦ ଭାଙ୍ଗ ନିଶା
ଶୁଣି ପଟାଦାରର ଉଡ଼େ ହଂସା
ମହାଜନ ସୁଧ ପାଉଣା, କରଜ ଦେବାର କଟକଣା,
ଆଇନ ଖଣ୍ଡା ହେବ ତିଆରି ।

+ + +

ପକ୍କ ମାହାଲ ଜମିଦାର ରଜା
ଧନ ରଖି ଗଞ୍ଜୁଥିଲେ ପରଜା
ପଶିଯିବ ତାଙ୍କ ସଜୁତ-ଅତ୍ୟାଚାର ନାରକା ।
କୃଷୀ ହେବ ସିନା ଜମି ମାଲିକ ।

ତାଙ୍କର "ଇଣ୍ଡିଆନ୍ ବ୍ୟୁରୋକ୍ରେସିକୁ ଇଣ୍ଡିଆନ୍ ମୋର ଜୁହାର" କବିତା ତତ୍କାଳୀନ ଗୋରା ଓ କଳା ସାହେବ ମାନଙ୍କର ମେରୁଦଣ୍ଡ ଓ ଜନସ୍ୱାର୍ଥ ବିରୋଧୀ ସାମନ୍ତବାଦୀ ମାନଙ୍କର ଏକ ନିଖୁଣ ଚିତ୍ର ।

ପୁଣି ତାଙ୍କର ଅମର ଲେଖନୀ ସଂକୀର୍ଣ୍ଣ ଜାତିଧର୍ମ ଗୋଷ୍ଠୀ ଗୋଠ ମାନଙ୍କର ବିରୋଧ କରି ପ୍ରଗଳ୍ଭ ମୁଖର ହୋଇ ଉଠିଥିଲା ।

"ଛୁଇଁ ଦେଲେ ଛୁଆଁ ତା ହେଲା ଗଲା ମୋ ଜାତି
କେତେ ପାପ କରିଛୁ କେତ ପାଇଲେ ଗତି"

+ + +

ଛୁଆଁ ଅଛୁଆଁ ଆଗୁର
ଜାତି ଅଜାତିର ବଗୁର
ନିଜର ସ୍ୱାର୍ଥ ଲାଗି ଚତୁର କରନ୍ତି ପୁରାଣ କାର
ପାପ ପୁଣ୍ୟ ଅବା ଜାତି ଅଜାତି କି ଧନ ଦେଇ ତଉଲନ୍ତି

× × ×

ସନାତନ ହିନ୍ଦୁଧର୍ମର ସଂସ୍କୃତିରେ ତଥା ଭାରତୀୟ ହିନ୍ଦୁ ସାମାଜିକ ପଦ୍ଧତିରେ ମାନବ ସମାଜର ମହୋପକାରୀ ଗୋ ଜାତିର ସେବାକୁ ସମର୍ଥନ କରି ଭଦ୍ରକ ଗୋଶାଳାର ଗୋଷ୍ଠାଷ୍ଟମୀ ଉପଲକ୍ଷେ ସେ ଗାଇ ଉଠିଥିଲେ—

ଦେଖି ନଦେଖୁଛ ଭାଇ ଗୋ-ଜାତି ଦୁଃଖ ଦଶାକୁ
ମାନବ ଜୀବନ ଧନ ଉପକାରୀ ଭରସାକୁ

× × ×

କେବଳ ହିନ୍ଦୁଧର୍ମରେ ନୁହେଁ ଖ୍ରୀଷ୍ଟିଆନ ଧର୍ମରେ ମଧ୍ୟ କୃଷକର୍ମ ପରିବହନ ଇତ୍ୟାଦିରେ ବ୍ୟବହୃତ ହେଉଥିବା ଘୋଟକାଦି ଗୃହପାଳିତ ପଶୁଙ୍କ ପ୍ରତି ସ୍ୱତନ୍ତ୍ର ବ୍ୟବହାର ପରିଦୃଷ୍ଟ ହୁଏ । :ଆୟୁାରଲାଣ୍ଡର କ୍ୟାଥଲିକମାନେ ଘୋଡ଼ା ମାଂସ ଭକ୍ଷଣ କରନ୍ତି ନାହିଁ ।

କବି ବାଞ୍ଛାନିଧି ତାଙ୍କର ଉତ୍କଳବାଣୀ ନାମକ ପୁସ୍ତକର ଭୂମିକାରେ "+++ ମୋ ପରି ନଗଣ୍ୟ ସଂଗୀତ ଲେଖକର ଏ କ୍ଷୁଦ୍ର ପୁସ୍ତିକା ଉପରୋକ୍ତ ପୁସ୍ତିକା ( ଯୁଗବାଣୀ ଓ ମଧୁଗୁଞ୍ଜନ ) ମାନଙ୍କର ସମକକ୍ଷ ହେବ ନାହିଁ ସତ୍ୟ କିନ୍ତୁ ମୋର ଗାନ ଗୁଡ଼ିକୁ ଯେପରି ଗ୍ରାମର ସାଧାରଣ ଲୋକେ ବୁଝିପାରିବେ ଓ ଗାଇ ପାରିବେ, ସେହି ଉଦ୍ଦେଶ୍ୟରେ ସରଳ ଭାଷାରେ ସରଳ ତାଳ ଓ ସ୍ୱରଯୋଗେ ରଚିତ ହୋଇଥିବାରୁ ଆଶାକରେ ଏହା ଦେଶରେ ଆଦୃତ ହେବ । ××× "

ଗଣ କବିତାର ମୂଳତତ୍ତ୍ୱ ହିଁ ଏହିଠାରେ ଗଣ ବା ସାଧାରଣଙ୍କ ଜୀବନ ସହିତ ଓତଃପ୍ରୋତ ଭାବରେ ସଂଶ୍ଲିଷ୍ଟ। ଗଣଙ୍କର ସହଜବୋଧ ତଥା ଗଣଙ୍କ ଦ୍ୱାରା ଆଦୃତ ଓ ଗଣ ଜୀବନକୁ ସ୍ୱଚ୍ଛନ୍ଦ ସାବଲୀଳ ପ୍ରଗତିଶୀଳ ଏବଂ ଉନ୍ନତ କରିବାରେ ଯେଉଁ ଲେଖା ( କବିତା ) ଦିଗ୍ ଦର୍ଶକ ତାହାହିଁ ଗଣ କବିତା । ସେଥିରେ ସୁରର ଭୂମିକା ସ୍ୱଳ୍ପ, ଯଦି ତ ସ୍ୱର ମୂର୍ଚ୍ଛନାର ତାନ ଜଣକୁ ଆକୃଷ୍ଟ କରିପାରେ ।

ବାଞ୍ଛାନିଧିଙ୍କର ଆହୁରି ଅନେକ କବିତାରେ ସାଧାରଣ ଜୀବନର ଦୁଃଖ ଦୁର୍ବିପାକ ତଥା ଅଭାବ ଅନାଟନ ଅତ୍ୟାଚାରର ଚିତ୍ର ଦେଖିବାକୁ ମିଳେ । ସାଧାରଣ ମଣିଷର ତେଲ ଲୁଣ ସଂସାରର ଉତ୍ଥାନ ପତନକୁ ସେ ଗୀତି କବିତାରେ ଅତି ସରଳ ପ୍ରାଞ୍ଜଳ ଭାବରେ ଚିତ୍ରଣ କରିଥିବାରୁ ଓଡ଼ିଆ ଭାଷାଭାଷୀ ଅନେକ ଲୋକ ତାଙ୍କ କବିତାରେ ଉଦ୍‌ବୁଦ୍ଧ ହୋଇ ତାଙ୍କୁ ଗଣକବି ଆଖ୍ୟା ଯଥାର୍ଥରେ ଦେଇଛନ୍ତି ।

## ଜାତୀୟ କବି ବାଞ୍ଛାନିଧି

ଊନବିଂଶ ଶତାବ୍ଦୀର ଶେଷାଂଶ ଓ ବିଂଶ ଶତାବ୍ଦୀର ପ୍ରଥମାଂଶରେ ଭାରତରେ ସ୍ୱାଧୀନତା ଆନ୍ଦୋଳନର ଯେଉଁ ଦୁର୍ବାର ଲେଲିହାନ ଶିଖା ଉଦ୍ଦିପିତ ହୋଇଥିଲା ସେଥିରେ ବାଞ୍ଛାନିଧିଙ୍କ ଭଳି କେତେକ କବି

ଚେଳି ସଂଯୋଗ କରିଥିଲେ ! ଓଡ଼ିଶାର ବାଞ୍ଛାନିଧି ଓ ବୀର କିଶୋର ଏ ଦିଗରେ ଅଗ୍ରଗଣ୍ୟ । ବିଭିନ୍ନ ରାଜନୈତିକ ସମ୍ମିଳନୀ ପାଇଁ ଲିଖିତ ତାଙ୍କର ପଦ୍ୟାବଳୀକୁ ଦେଖିଲେ ମନେହୁଏ, କବି ବାଞ୍ଛାନିଧିଙ୍କ ଲେଖାର ଆକର୍ଷଣ, ତତ୍କାଳୀନ ଓଡ଼ିଶାର ଜନମନକୁ ଗଭୀର ସ୍ପର୍ଶ କରି ପାରି ଥିଲା ଓ ସମ୍ମିଳନୀ ମାନଙ୍କରେ ଆଦୃତ ହେଉଥିଲା । ତାହା ନ ହେଲେ କବିଙ୍କର ଲେଖନୀ ଏପରି ଅବାରିତ ଭାବରେ ଚାଲି ନଥାନ୍ତା । ଭାରତ ମାତାର ଦୁଃଖରେ କାତର ହୋଇ ସେତେବେଳେ କବି ଗାଇଥିଲେ,

ଧନ ଜନ ଯୁକ୍ତା ଭାରତମାତା
ନମୋ ନମୋ ଜନନୀ ଶ୍ରୀ ଚରଣେ
ସନ୍ତାନ ବଳେ ପ୍ରେମେ ଆନନ୍ଦେ
ଯା'ଚର କରୁଣା ମା' ଶରଣେ
ବନ୍ଧନ ଅନ୍ତର କାତର ଅତି
ମୁକତି କାମେ ଆମେ ଦେଇଛୁ ମତି
ଯୁଝିଁ ସନ୍ତାନ ସନ୍ତତି ସଂଗରଣେ ।

ଗାନ୍ଧିଜୀଙ୍କର ନେତୃତ୍ୱରେ ଜାତୀୟ କଂଗ୍ରେସର ନିଶାଣ ଚରଖା ଚିହ୍ନିତ ତ୍ରିରଙ୍ଗ ପତାକାର ଗୌରବ କୀର୍ତ୍ତନ କରି ବାଞ୍ଛାନିଧି ସେତେବେଳେ ଲେଖିଥିଲେ:—

"ରେ ପତାକା ଜାତିର ମଙ୍ଗଳ ଜାତିର ଜୀବନ ପରାଣ ଭୂଷଣରେ
ଏକତା ପୀରତି ଶାନ୍ତି ମୂରତି ସୁନ୍ଦର ତୋହର ସମାନ ନାହିଁରେ
ତୋହର ଲାଗି କେତେ ଯେ ସମର
ଲାଗିଛି ଜାଗିଛି କୀରତି ଅମର
ତୋହର ଲାଗି କେତେ କାରାଗାର ବରିଲେ, ମରିଲେ
ସମର ଭୂଇଁରେ ।"

ବୀରପ୍ରସୂ ଭାରତ ଜନନୀ ବ୍ରିଟିଶ୍ ବଣିକର କର କବଳିତା ନିଷ୍ପେଷିତା ନିର୍ଯ୍ୟାତିତା ଓ ଲୁଣ୍ଠିତା । ପରାଧୀନତାର ଅନ୍ଧକାରରେ ପ୍ରତ୍ୟେକ ଭାରତୀୟର ମେରୁଦଣ୍ଡ କ୍ଳାନ୍ତ, ନମିତ । ଝାନ୍ସିର ରାଣୀ, ତାନ୍ତିଆ ଟୋପି, ନାନା ସାହେବ, ସୁରେନ୍ଦ୍ରସାଏ ଓ ଆଉ ହଜାର ହଜାର ସିପାହୀ ପରାସ୍ତ । ଭାରତୀୟ ଜନତାର ନୈତିକ ବଳ ଖର୍ବ ଧୂଳିସାତ

କରି ଭାରତର ପ୍ରପୀଡ଼ିତ ପ୍ରତ୍ୟେକ ଭାରତୀୟ ଯେତେବେଳେ ଶଙ୍କିତ ଓ ଭାଗ୍ୟ ଚକ୍ରରେ ଗଭୀର ଆସ୍ଥାବାନ ହେବାକୁ ବାଧ୍ୟ ଠିକ୍ ସେତିକି ବେଳେ ବାଞ୍ଛାନିଧିଙ୍କ ଭଳି କବିଙ୍କର ଅମର ଲେଖନୀ ପ୍ରସୂତ ମୋହମୁଦ୍‌ଗର ଏ ଜାତିକୁ ଜୀବନ୍ତ କରିଥିଲା ।

ପୁଣି ସ୍ୱାଧୀନ ନାଗରିକର ସମ୍ମାନ, ଶାନ୍ତି ଓ ପ୍ରଗତିକୁ ଲକ୍ଷ୍ୟକରି ତତ୍‌କାଳୀନ ଯୁବଶକ୍ତିକୁ ସେ ଆହ୍ୱାନ ଦେଇ ଲେଖିଥିଲେ:—

ଜାଣିଛୁ ଯେ ଥରେ ଜାତୀୟତା ସ୍ୱାଦୁ
ଚାଖିଛୁ ଯେ ଥରେ ସ୍ୱାଧୀନତା ମଧୁ
ପାଇଛୁ ଦେବାକୁ ଜୀବନ ଯୌବନ ମାନ ସନମାନ
ବମନ ନୋହିବରେ

× × ×

ନାରୀ ଜାତିର, ବିଶେଷତଃ ଭାରତୀୟ ନାରୀଙ୍କର ଅଭ୍ୟୁତ୍‌ଥାନ ପାଇଁ ଅତୁଳ ଆବେଦନ ସହ ସେ ଲେଖିଥିଲେ—

ଜାଗିବ ନାହିଁକି ଏବେ ଉତ୍କଳ ରମଣୀ ହେ
ଲାଗିବ ନାହିଁକି ହୃଦେ ଦେଶଦୁଃଖ ଶୁଣିହେ ।

+ + +

ଏବଂ ବିଦେଶୀ ବଣିକ ମାନଙ୍କର ଏକଚୁଟିଆ ବ୍ୟବସାୟକୁ ଲକ୍ଷ୍ୟ କରି ତାଙ୍କ କଲମ ମୁଖର ହୋଇ ଉଠିଥିଲା—

କାହିଁ ଅଇଲେ ବିଦେଶରୁ ବେପାରୀ
ସବୁ ପାରିଲେ ହେଲୁ ଆମେ ଭିକାରୀ,
ଇଂରାଜୀ, ଇରାନୀ, ଜର୍ମାନୀ. ଜାପାନୀ
ଚୀନା କାବୁଲି ଏ ଦେଶରେ ସେ ପାରି
ଚକ ଚକ ଗୁଇନା ଏ ମାଟିର ବାସନ
ସାରି ଦେଲା ବୁଡ଼ି ଦେଶ କଂସାରୀ

× × ×

ବାଞ୍ଛାନିଧି ଥିଲେ ଜଣେ ସ୍ୱାଧୀନଚେତା ଦୂରଦ୍ରଷ୍ଟା କବି । ସେ କେବେ-ହେଲେ ମାଗି ମାଗି ସ୍ୱାଧୀନତା ମିଳିବାର ସ୍ୱପ୍ନ ଦେଖୁ ନ'ଥିଲେ ଓ ଏ

ଧରଣର ଶାନ୍ତାଧାରରେ ବିଶ୍ୱାସ ସ୍ଥାପନ କରୁ ନ ଥିଲେ । ତେଣୁ ଦେଶ-ବାସୀଙ୍କଠାରୁ ସେ ଜବାବ ଚାହିଁଥିଲେ—

କହ କହ କେଉଁ ଜାତି ପାଇଛି ମୁକତି
କରି ହାରି ହୁରି ଗୁହାରି
କହ ପାଇଛି କେ ସୁଖ ଲଭିଛି ଦୁଃଖ
ମାଗି ମାଗି ପଥ ଭିକାରୀ
ଯେବେ ବାଘ ମୁହେଁ ପଡେ ଶୀକାର
ମିନତିରେ ପାଏ ସେ କି ଉଦ୍ଧାର
ଛିଡ଼ିକି ହାଏ କେବେ ଧୀବର ଜାଲରୁ
ମୀନ ନ ଗଲେ ଆପେ ବାହାରି

× × ×

ସ୍ୱାଧୀନତା ପ୍ରାପ୍ତିର କେତେ ବର୍ଷ ପୂର୍ବରୁ ସେ ଆଗରୁ କଣ ଆସୁଛି ତାହା ଜଳ ଜଳ ଦେଖି ପାରିଥିଲେ ।

କି ହେବ ଏ ସ୍ୱରାଜ୍ୟ ଘେନି
ଯେବେ ମୋର ନ ପୂରେ ପେଟ
ଖଟି ଖଟି ମଲେଣି ମୂଲିଆ
କୃଷୀ ଚଷି ଦାନା କନା କାଣ୍ଡ

\+ \+ \+

ଏବଂ ରାଜନୈତିକ ବ୍ୟକ୍ତିମାନଙ୍କୁ ବ୍ୟଙ୍ଗ ବିଦ୍ରୂପ କରି ଲେଖିଲେ—

ମୁଁ ଯଦି ମନ୍ତ୍ରୀ ହୁଏ ଜୀବନ ମୋହର ଧନ୍ୟ ହେବ ।
ଛୁଛା ଖାଲି ଶ୍ରେଷ୍ଠ ଉପାଧିରେ ଶ୍ରମ ବି ମୋହର ସଫଳ ହେବ ।

ଶେଷରେ ଏତିକି ମାତ୍ର କୁହାଯାଇ ପାରେ ଯେ, କବି ବାଞ୍ଛାନିଧି ଦୈନନ୍ଦିନ ଜନ ଜୀବନର ଘଟଣା ପ୍ରବାହକୁ ସମ୍ବଳ କରି ସ୍ୱଚ୍ଛନ୍ଦ ଛନ୍ଦ ପ୍ରବାହ ଓ ସଂଗୀତୋପଯୋଗୀ କବିତା ରଚନା କରି ଓଡ଼ିଆ ଭାଷା ଓ ଜାତିକୁ ଯେଉଁ ଦାନ କରି ଯାଇଛନ୍ତି ତାହା ଅବିସ୍ମରଣୀୟ ଓ ଅତୁଳନୀୟ ।

—o—

# ସାହିତ୍ୟରେ ଜାତୀୟତା ଧର୍ମ ଅନୁଚିନ୍ତା ଓ ବାଂଛାନିଧି ମହାନ୍ତି

ପଠାଣି ପଟ୍ଟନାୟକ

## ଓଡ଼ିଆ ସାହିତ୍ୟ ବିରୁଦ୍ଧରେ ଏକ ଅଭିଯୋଗ

ଓଡ଼ିଆ ସାହିତ୍ୟର କେତେଖଣ୍ଡି ଇତିହାସ ପ୍ରସ୍ତୁତ ହୋଇ ସାରି ଥିଲେ ହେଁ ଚଳିତ ଶତାବ୍ଦୀର ଓଡ଼ିଆ ସାହିତ୍ୟ ସଂପର୍କରେ ବୈଜ୍ଞାନିକ ବିଶ୍ଳେଷଣ ହୋଇ ପାରିନାହିଁ । ପ୍ରାଚୀନ ଯୁଗର ସାହିତ୍ୟ ସଂପର୍କରେ ଯାହାକିଛି ଲେଖା ଯାଉଛି ତାହା ହୁଏତ ଅନେକ କ୍ଷେତ୍ରରେ ଗବେଷଣା ସାପେକ୍ଷ । ପ୍ରାଚୀନ ଦୁଷ୍ପ୍ରାପ୍ୟ ତାଳପତ୍ର ପୋଥି ସଂଗ୍ରହ ଏବଂ ସଂକଳନ ନ ହୁଆରେ ସେ ଯୁଗ ସଂପର୍କରେ ସମ୍ୟକ ଆଲୋକପାତ କଲାବେଳେ ଆଲୋଚକଗଣ ଯଦି ବହୁର ବିଭ୍ରାଟ କରି ବସନ୍ତି ତାହା ହୁଏତ କ୍ଷମଣୀୟ ଅପରାଧ ହୋଇପାରେ, ମାତ୍ର ଚଳିତ ଶତାବ୍ଦୀର ସାହିତ୍ୟ ସଂସାରକୁ ଯେଉଁମାନେ ଗଢ଼ିଛନ୍ତି ଏବଂ ଗଢ଼ୁଅଛନ୍ତି, ସେମାନେ ସମସ୍ତେ ବିସ୍ମୃତ ହେବା ଅବସ୍ଥାକୁ ଆସିନାହାନ୍ତି । ସାହିତ୍ୟ ଓ ସମାଜର ପ୍ରବହମାନ ଧାରାରେ ଯେଉଁ ପ୍ରତିଭାବାନ କର୍ମୀ ଓ ସ୍ରଷ୍ଟାଗଣ ନିଜକୁ ନିୟୋଜିତ କରିଥିଲେ, ସେମାନେ ଏବେ ମଧ୍ୟ ଲୋକ ସମାଜରେ ଆଲୋଚିତ ହେଉଅଛନ୍ତି । ଏହି କାରଣରୁ ଆଧୁନିକ ଓଡ଼ିଆ ସାହିତ୍ୟକୁ ସିଂହାବଲୋକନ କଲେ ଜଣାଯାଏ ଯେ ତାହା ଭାରତୀୟ ଜାତୀୟ ଆନ୍ଦୋଳନର ପ୍ରଖର ସ୍ରୋତ ସହିତ ସମତାଳରେ ଝାସ ଦେଇ ଭାସି ଆସି ପାରିନାହିଁ । ଯେଉଁ କେତେ ଜଣ ଏହି ସଂଗ୍ରାମୀ ଅଭିଯାନରେ ନିଜର କଳ୍ପନା ଏବଂ ସାଧନାକୁ ରସାଣିତ କରିଥିଲେ, ସେମାନଙ୍କୁ ଏ ଯୁଗର ଐତିହାସିକ ଏବଂ ଆଲୋଚକ ଉପଯୁକ୍ତ ସ୍ୱୀକୃତି ପ୍ରଦାନ କରିପାରିନାହାନ୍ତି । ସେଥିପାଇଁ ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରକୃତ ଅଭିମୁଖ୍ୟ ଏବଂ ପ୍ରାଣ ପ୍ରତିଷ୍ଠା ସଂପର୍କରେ ଆଲୋଚନା କଲାବେଳେ ଏହି ଆଲୋଚକଗଣ ଇତିହାସର ସଙ୍କେତ ଏବଂ ସୂଚନାକୁ ଭୁଲିଯାଇଥାଆନ୍ତି । ଏହି ପରିପ୍ରେକ୍ଷିରେ ଆଲୋ-

ଚକ ମାନଙ୍କ ମଧ୍ୟରେ ବେଶ୍ୱପ୍ରାୟ କବି ବାଞ୍ଛାନିଧି ଅନ୍ୟତମ ସାଧକ କହିଲେ ଅତ୍ୟୁକ୍ତି ହେବ ନାହିଁ ।

## ସାମାଜିକ-ଚେତନା ଏବଂ ସାହିତ୍ୟିକ-ସାଧନା

ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଭାରତବର୍ଷରେ ଜାତୀୟତା ଆନ୍ଦୋଳନର ସୂତ୍ରପାତ ହୋଇଥିଲା । ପରାଧୀନ ଭାରତବର୍ଷକୁ ମୁକ୍ତ କରିବାପାଇଁ ଭାରତର ବହୁ ଗୁଣୀ ସନ୍ତାନ ସେ କାଳରେ ଦେଶ-ବ୍ୟାପୀ ସାଂସ୍କୃତିକ ଆନ୍ଦୋଳନ ଆରମ୍ଭ କରିଦେଇଥିଲେ । ମାତ୍ର ଏହା ପୂର୍ବରୁ ଦେଶରୁ ନାନା ସଂସ୍କାରଧର୍ମୀ ଆନ୍ଦୋଳନ ଏବଂ ଆଧ୍ୟାତ୍ମିକ ଭାବନାର ପ୍ଲାବନ ଜୀବନରେ ନୂତନ ଅବବୋଧ ସୃଷ୍ଟି କରିପାରିଥିଲା । ଆର୍ଯ୍ୟ ସମାଜ, ବ୍ରାହ୍ମସମାଜ, ଏବଂ ରାମକୃଷ୍ଣ ମିଶନ୍ ପ୍ରଭୃତି ଅନୁଷ୍ଠାନ ମାଧ୍ୟମରେ ଦେଶର ବିଭିନ୍ନ ପ୍ରାନ୍ତରେ ଆକୁମାରୀ ହିମାଚଳ ଏକ ପ୍ରକାର ଚଳଚଞ୍ଚଳ ପ୍ରାଣପ୍ରବାହ ସୃଷ୍ଟି ହୋଇ ଯାଇଥିଲା । ପ୍ରତ୍ୟକ୍ଷ ଭାବରେ ଜାତୀୟତା ଆନ୍ଦୋଳନ ପାଇଁ ତାହା ଥିଲା ଏକ ବଳିଷ୍ଠ ଭୂମିକା । ଊନବିଂଶ ଶତାବ୍ଦୀର ଶେଷଭାଗରେ ଯେଉଁ ଓଡ଼ିଆ କବି ଓ ଲେଖକଗଣ ଏହି ଆନ୍ଦୋଳନରେ ପ୍ରତ୍ୟକ୍ଷ ଭାବରେ ଅଂଶଗ୍ରହଣ କରିଥିଲେ ସେମାନେ ହେଲେ ଭକ୍ତକବି ମଧୁସୂଦନ, ବ୍ୟାସକବି ଫକୀର ମୋହନ, କର୍ମଯୋଗୀ ଗୌରୀଶଙ୍କର ଏବଂ ବାଗ୍ମୀ ବିଶ୍ୱନାଥ ପ୍ରଭୃତି ସାହିତ୍ୟିକ ଗୋଷ୍ଠୀ । ୧୯୦୩ ସାଲରେ ଉତ୍କଳ ସମ୍ମିଳନୀର ପ୍ରତିଷ୍ଠା ସଙ୍ଗେ ସଙ୍ଗେ ଓଡ଼ିଶା ଭୂମିରେ ଏକ ପ୍ରକାର ଜାତୀୟତା ଆନ୍ଦୋଳନର ସୂତ୍ରପାତ ହୋଇଥିଲା । ୧୯୨୦ ସାଲରେ ମହାତ୍ମାଗାନ୍ଧିଙ୍କ ଆହ୍ୱାନରେ ପ୍ରତ୍ୟକ୍ଷ ରାଜନୈତିକ ଆନ୍ଦୋଳନରେ ଯୋଗ ଦେବାର ନିଷ୍ପତ୍ତି ଗ୍ରହଣ କରିବା ଉପଲକ୍ଷ୍ୟରେ ଉତ୍କଳ ସମ୍ମିଳନୀକୁ ଭାଙ୍ଗିଦେବା ପର୍ଯ୍ୟନ୍ତ ତାହାହିଁ ଥିଲା ଓଡ଼ିଆ ଜାତୀୟ ଜୀବନର ସମ୍ମିଳିତ ପ୍ରଚେଷ୍ଟାର ରଙ୍ଗମଞ୍ଚ । ଏହି ଜାତୀୟ ରଙ୍ଗମଞ୍ଚରେ କେବଳ ଓଡ଼ିଆଭାଷୀ ଅଞ୍ଚଳର ଏକତ୍ରୀକରଣ ପାଇଁ ଆହ୍ୱାନ ଦିଆଯାଇ ନଥିଲା । ଏହି ମଞ୍ଚରେ ରାଜା ପ୍ରଜା, ଧନୀ ନିର୍ଦ୍ଧନ, ଶିକ୍ଷିତ ଅଶିକ୍ଷିତ, ଜାତି ଅଜାତି, ଛୁଆଁ ଅଛୁଆଁ ସମସ୍ତେ ଏକାଠି ହୋଇ ଜାତୀୟ ଜୀବନର ପ୍ରତିଷ୍ଠା ପାଇଁ ପ୍ରଥମେ ଶପଥ ଗ୍ରହଣ କରିଥିଲେ । ବହୁକାଳର ସାମନ୍ତବାଦୀ ପ୍ରଭାବିତ ସମାଜରେ ଏହି

ଅଭିମୁଖ୍ୟ ଏକ ବୈପ୍ଳବିକ ଆନ୍ଦୋଳନ ସୃଷ୍ଟି କରିଥିଲେ ଏବଂ ଓଡ଼ିଆ ସାହିତ୍ୟରେ ତାହାର ପ୍ରତିଧ୍ୱନି ଆଦୌ ଉପେକ୍ଷଣୀୟ ହୋଇ ରହିନାହିଁ । କେବଳ ସେତିକି ନୁହେଁ, ସମ୍ମିଳନୀ ମଞ୍ଚରୁ ଓଡ଼ିଶାର ସାହିତ୍ୟ, ସଂସ୍କୃତି, ଶିକ୍ଷା, ଶିଳ୍ପ ଓ ବାଣିଜ୍ୟ ପ୍ରଭୃତି ବିଭିନ୍ନ କ୍ଷେତ୍ରରେ ସୃଜନମୂଳ ପରିବର୍ତ୍ତନ ପାଇଁ ଆହ୍ୱାନ ଦିଆଯାଇଥିଲା । ପରେ ପରେ ଗାନ୍ଧିଜୀଙ୍କ ନେତୃତ୍ୱରେ ୧୯୨୦ ଏବଂ ୧୯୩୦ ସାଲରେ ଦେଶବ୍ୟାପୀ ଜାତୀୟ ସଂଗ୍ରାମରେ ଅନ୍ୟମାନଙ୍କ ସହିତ ଓଡ଼ିଶାର ତ୍ୟାଗୀ, ନିର୍ଭୀକ, ଦେଶହିତୈଷୀ ଯୁବକ ଯୁବତୀଗଣ ଯେଉଁପରି ଝାସ ଦେଇଥିଲେ ତାହା ସମଗ୍ର ସାମାଜିକ ଜୀବନକୁ ଓଲଟ ପାଲଟ କରି ଦେଇଥିଲା । ପ୍ରାଚୀନ ପ୍ରତିକ୍ରିୟାଶୀଳ ସମାଜର କେତେକ ପରମ୍ପରାବାଧା ବିଦେଶୀ ଶାସନର ଚକ୍ର ତଳେ ପିଷ୍ଟ ହୋଇ ଅତ୍ୟନ୍ତ ଅନୁଗତ ଭାବରେ ଏହି ପରିବର୍ତ୍ତନର ଆହ୍ୱାନକୁ ଶୁଣି ପାରି ନଥିଲେ ଏବଂ ବିପ୍ଳବର ପ୍ରତିକ୍ରିୟା ଦେଶର ପ୍ରତ୍ୟେକ ସ୍ତରରେ ଅନୁଭୂତ ହେଉଥିଲା । ମାତ୍ର ଦୁଃଖର କଥା ଯେ ତତ୍କାଳୀନ ସମାଜରେ ଏହି ଯୁଗାନ୍ତକାରୀ ପରିବର୍ତ୍ତନର କାହାଣୀ ଓଡ଼ିଆ ସାହିତ୍ୟର ରୋମାଣ୍ଟିକ୍-ଧର୍ମୀ ପ୍ରତିଷ୍ଠିତ ସାହିତ୍ୟ-ସାଧକ ଗଣ ଆଦୌ ବିଗ୍ରହକୁ ନେଇପାରି ନାହାନ୍ତି । ସେମାନଙ୍କର କାବ୍ୟ, କବିତା ଓ ଉପନ୍ୟାସରେ ମଧ୍ୟବିତ୍ତ ଗୋଷ୍ଠୀର ବିଶେଷତଃ ନୂତନ ବାବୁ ସମାଜର ନବଦମ୍ପତିର ପ୍ରଣୟ ବିଳାସ ମୁଖ୍ୟ ଆଖ୍ୟାନଭାଗ ରୂପେ ପରିବେଷିତ ହେଉଥିଲା । ଏହିପରି ଅବସାଦପୂର୍ଣ୍ଣ ସାମାଜିକ ଜୀବନରେ ଯେଉଁ କେତେଜଣ ଜାତୀୟତାର ରଣଭେରୀ ଫୁଙ୍କି ଫୁଙ୍କି ଲେଖମାନଙ୍କୁ ଚିର ଜାଗ୍ରତ କରିଥିଲେ, ବାଞ୍ଛାନିଧି ମହାନ୍ତି ସେମାନଙ୍କ ମଧ୍ୟରେ ଜଣେ ଶକ୍ତିଶାଳୀ କବି ପୁରୁଷ ଥିଲେ ।

## ଗାନ୍ଧୀ-ଯୁଗର ଚେତାବନୀ

ଭାରତର କୋଟି କୋଟି ତରୁଣ ତରୁଣୀଙ୍କୁ ଦିନେ ଗାନ୍ଧିଙ୍କର ମହତବାଣୀ ପାଗଳ କରି ଦେଇଥିଲା । ସମସ୍ତ ଭୋଗବିଳାସ, ଭବିଷ୍ୟତର ସୁଖସ୍ୱପ୍ନକୁ ଜଳାଞ୍ଜଳି ଦେଇ ହସି ହସି ଜେଲ ଓ ଯନ୍ତ୍ରଣାକୁ ବରଣ କରିବାକୁ ଅସଂଖ୍ୟ ଯୁବକ ଯୁବତୀ ଯେ ଦଉଡ଼ି ଆସିଥିଲେ, ତାହାର ମୂଳରେ ଗାନ୍ଧିଙ୍କର ଯାଦୁକରୀ ବାଣୀ ବିଜୁଳିର ଚମତ୍କାର ସ୍ପନ୍ଦନ

ସୃଷ୍ଟି କରି ପାରିଥିଲା । ଗାନ୍ଧିଜୀ କେବଳ ସ୍ୱାଧୀନତା ପାଇଁ ଡାକରା ଦେଇ ନଥିଲେ, ସେ ଦେଶର ଯାବତୀୟ ଦୋଷ ଓ ଦୁର୍ବଳତା ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଥିଲେ । ପୃଥିବୀର ଜାତୀୟ ଆନ୍ଦୋଳନର ଇତିହାସରେ ଯାହା ଥିଲା ଅଚିନ୍ତନୀୟ ଏବଂ ଅଶ୍ରୁତପୂର୍ବ, ସେହି ଅସହଯୋଗର ଆହ୍ୱାନ ଜରିଆରେ ଦେଶର ଆତ୍ମନିର୍ଭରତା, ଜାତୀୟ ଐକ୍ୟ, ଧର୍ମ ଓ ଗୋଷ୍ଠୀଗତ ସମାନତା, ଦଳିତ ଓ ନିଷ୍ପେସିତର ପ୍ରତିଷ୍ଠା ସମ୍ପର୍କରେ ମହାତ୍ମାଗାନ୍ଧିଙ୍କର ବାଣୀ ଅଭାବନୀୟ ପ୍ରେରଣା ସୃଷ୍ଟି କରି ପାରିଥିଲା । ଗଭୀର ମାନବଧର୍ମୀ ସ୍ୱପ୍ନ ଉପରେ ସ୍ୱାଧୀନତା ଆନ୍ଦୋଳନର ମୂଳମନ୍ତ୍ର ଥିଲା ତାହା କବି ବାଞ୍ଛାନିଧିଙ୍କ ନିମ୍ନୋକ୍ତ ବାଣୀରୁ ଅନୁମିତ ହୁଏ । ସେ ଗାଇଥିଲେ—

"ମାନବତା ପ୍ରୀତି ଯାର ମୂଳମନ୍ତ୍ର
ଜାତୀୟ ଗୌରବ ଯାର ଏକତନ୍ତ୍ର
ଧରି ସେ ଆଗ୍ରହେ ହୋଗ ବୀଣା-ଯନ୍ତ୍ର
ସ୍ୱାଧୀନତା-ସ୍ୱରେ ଗାଉଛୁ ରେ ।"

କବି ବାଞ୍ଛାନିଧି ଥିଲେ ଜାତୀୟଯୁଗର ସ୍ମରଣ କବି । ସେ କେବଳ ସ୍ୱପ୍ନବିଳାସୀ ନଥିଲେ, ପ୍ରତ୍ୟକ୍ଷ ଆନ୍ଦୋଳନରେ ଦୁଃଖକଷ୍ଟ ବରଣ କରି ଜ୍ୱାଳାମୟୀ ଅଗ୍ନିବାଣୀ ସାହାଯ୍ୟରେ ଜାତୀୟ ସଂଗ୍ରାମର ସୈନିକ ମାନଙ୍କୁ ଉଦ୍‌ବୁଦ୍ଧ କରିଥିଲେ । ତାଙ୍କର କବିତା ସେତେବେଳେ ଅସଂଖ୍ୟ ସୈନିକର କଣ୍ଠରେ ଝଂକୃତ ହେଉଥିଲା । ନଗର ଓ ପଲ୍ଲୀ ସଂସାରରେ ବାଞ୍ଛାନିଧିଙ୍କ ମର୍ମବାଣୀ ଦୁର୍ବଳର ପ୍ରାଣରେ ସୃଷ୍ଟି କରୁଥିଲା ଅହେତୁକ ଶକ୍ତି ଓ ଉଚ୍ଛ୍ୱାସ । ବିଦେଶୀ ଶାସକ ମାନଙ୍କ ବିରୁଦ୍ଧରେ ସେ ଯେଉଁ ସଂଗୀତ ରଚନା କରିଥିଲେ ତାହା ଥିଲା ସେକାଳର ସ୍ୱାଧୀନତା ଯୁଦ୍ଧର ବାନର ସୈନିକମାନଙ୍କର ମୃତ୍ୟୁସଞ୍ଜୀବନୀ ସୁରା । ସେହି ସଙ୍ଗୀତ ଗାଇ ଗାଇ ବିଦେଶୀ ଶାସକର ଲାଠିମାଡ଼ ଏବଂ ସଙ୍ଗୀନ ପ୍ରହାରକୁ ସେମାନେ ଖାତିର କରୁନଥିଲେ । ଏହିପରି ଏକ ଅଗ୍ନିଗର୍ଭ ସଂଗୀତ ଯାହା ଲକ୍ଷ ଲକ୍ଷ ଲୋକଙ୍କର ପ୍ରିୟ ଭଜନ ହୋଇ ରହିଥିଲା, ତାହା ହେଲା—

"କାହିଁ ଅଇଲେ ବିଦେଶରୁ ବେପାରୀ
ସବୁ ସାଇଲେ ହେଲୁ ଆମେ ଭିକାରୀ

ଇଂରାଜୀ-ଇରାନୀ-ଜର୍ମାନୀ-ଜାପାନୀ
ଚିନା କାବୁଲ ଏ ଦେଶ ସେ ପାରି ।
ଚକ ଚକ ଝଲକା ମାଟିର ବାସନ
ସାରିଦେଲା ବୁଝି ଦେଶ କଂସାରି ।
ଫରାସୀର ଫେନ୍‌ସୀ କାମ-ଜାପାନର ଶସ୍ତା ଦାମ
କଟେଇ ଦୁଇସେର ସୁଇଟ୍ ସେଣ୍ଟ ପରଫ୍ୟୁମେର
କାଚ ଶଂଖା ମାରିଦେଲା ଶଂଖାରୀ ।
ନକଲି ଖଦର ଜାପାନୀ ଚଦର
ଗାନ୍ଧି ଲୁଗାକୁ ହେଲା ଭଗାରି ।"

ବିଦେଶୀ ଶାସନର ଚକ୍ର ଚଳେ ଦେଶର ଅର୍ଥନୈତିକ ଏବଂ ସାମାଜିକ ଦୁର୍ଗତି ପ୍ରତି କବି ଦୃଷ୍ଟି ଆକର୍ଷଣ କରିଛନ୍ତି ଏବଂ ପରାଧୀନତାର ଗ୍ଳାନି ଯୋଗୁଁ ଜାତୀୟ ଚରିତ୍ର ଏପରି ଭ୍ରଷ୍ଟ ହୋଇଯାଇ ଅଛି ଯେ ସ୍ୱଦେଶୀ ଆନ୍ଦୋଳନର ମହତ୍ତ୍ୱ ଲୋକେ ହୃଦୟଙ୍ଗମ କରିବାକୁ କ୍ଷମ ହେଉନାହାନ୍ତି । ନିଜର ଶକ୍ତି ଏବଂ ସାମର୍ଥ୍ୟ ଉପରେ ନିର୍ଭର କରି ଅଗ୍ରସର ହେବା ବିଧେୟ । ପରପଦ ଲେହନ କରି ଅନ୍ୟର ଦୟାଦାକ୍ଷିଣ୍ୟ ଉପରେ ନିର୍ଭର କରୁଥିବା କୌଣସି ଜାତି କେବେହେଲେ ସମୃଦ୍ଧି ସାଧନ କରିପାରିବ ନାହିଁ । ଜାପାନ ଏବଂ ଜର୍ମାନ ଜାତିର ସମୃଦ୍ଧିର କାହାଣୀ ଏବଂ ଜାତୀୟତାର ଉନ୍ମେଷ ସଂପର୍କରେ ସୂଚନା ପ୍ରଦାନ କରି ବାଞ୍ଛାନିଧି କହିଛନ୍ତି—

"ଉଠ ଉଠ ଉଠ ଭାଇ ମଠ କଲେ ରକ୍ଷା ନାହିଁ
ନିଜ ଦେଶକୁ ଉଠାଇ ପୌରୁଷ ପାଳ ।"

ପୁନଶ୍ଚ ସେ ସତର୍କ କରାଇ ଦେଇଛନ୍ତି—

"କହ କେଉଁ ଜାତି ପାଇଛି ମୁକତି
କରି ହୁରି ହାରି ଗୁହାରି
କହ ପାଇଛି କେ ସୁଖ ଲଭିଇଛି ଦୁଃଖ
ମାଗି ମାଗି ପଥ ଭିକାରି ।"

ଯାଚଜ୍ଞା କରି କେହି ସୁଖ ପାଏ ନାହିଁ । ସୁଖ ଓ ସମୃଦ୍ଧି ଅର୍ଜନ କରିଯାଏ । ନିଜର ଯୋଗ୍ୟତା ବଳରେ ଅଧିକାର ସାବ୍ୟସ୍ତ କରିବାକୁ

ହୁଏ । ତେଣୁ ହିନ୍ଦୁ, ମୁସଲମାନ ଶିଖ, ଜୈନ ସମସ୍ତେ ଭାରତ ଜନନୀର ଜୟଗାନ କରି ଅଗ୍ରସର ହୁଅନ୍ତୁ ବୋଲି ତାଙ୍କର କାମନା । କେବଳ ଅନୈକ୍ୟ ଯୋଗୁ ଅତୀତରେ ଏହି ବିଶାଳ ଦେଶର ବାରମ୍ବାର ଅଧଃପତନ ଘଟିଅଛି । ଏହି ପ୍ରାଚୀନ ପୁରାଣ ସେବିତ ଜାତିକୁ ବିଦେଶୀଗଣ ଲୁଣ୍ଠନ ଏବଂ ଶୋଷଣ କରି ଆସିଅଛନ୍ତି । ତେଣୁ ଏ ଦେଶର ପ୍ରକୃତ ଶକ୍ତି ନିହିତ ଅଛି ଏକ ଦେଶ ଏବଂ ଏକ ଜାତି ଆହ୍ୱାନକୁ ବରଣ କରିବାରେ ।

"ହିନ୍ଦୁ ମୁସଲମାନ ଜୈନ ବୌଦ୍ଧ ଖ୍ରୀଷ୍ଟିୟାନ
ସକଳେ ଚେତିଲୁଣି ହେ ଭାରତ ସନ୍ତାନ ।

*　　*　　*

ଆସହେ ଆସ ଭାଇ ସବେ ମିଳି ଭାରତ ସନ୍ତାନ
ଅସହଯୋଗେ ମାତିଣ ଗାଅ ଜନନୀର ଗାନ ।"

ରାଜନୈତିକ ସ୍ୱାଧୀନତା କେବଳ ସ୍ୱାଧୀନତା ନୁହେ, ଯଦି ତାହା ସହିତ ଅର୍ଥନୈତିକ ସାମାଜିକ ଏବଂ ସାଂସ୍କୃତିକ ସ୍ୱାଧୀନତା ହାସଲ ହୋଇ ନାହିଁ । ଯେଉଁ ସ୍ୱାଧୀନ ସମାଜରେ ଶୋଷକ ଓ ଶୋଷିତ ରହିଛନ୍ତି, କୃଷୀ କରଭାରରେ ନିଷ୍ପୀଡ଼ିତ ହେଉଅଛି । ଜାତି-ଅଜାତିର ବାଡ଼ ସୃଷ୍ଟି ହେଉଅଛି, ଧନୀ ଓ ଦରିଦ୍ରର ପାର୍ଥକ୍ୟ ସାମାଜିକ ସମାନତାକୁ ବିଡ଼ମ୍ବିତ କରୁଅଛି, ସେପରି ସ୍ୱାଧୀନତାର କି ମୂଲ୍ୟ ଅଛି ?

କର୍ମଯୋଗୀ ବାଞ୍ଛାନିଧି ତେଣୁ ଅତ୍ୟନ୍ତ ସହାନୁଭୂତିଶୀଳ ହୃଦୟରେ ସମାଜର ଏହି ଅସମାନତା ବିରୁଦ୍ଧରେ ଯୁଦ୍ଧ ଘୋଷଣା କରି ଗାଇଥିଲେ—

"କି ହେବ ସେ ସ୍ୱରାଜ ଘେନି ଯେବେ ମୋର ନପୁରେ ପେଟ
ଖଟି ଖଟି ମଲେଣି ମୂଲିଆ କୃଷୀ ଚଷି ଦାନା କନା ନଅଣ୍ଟ ।
ଅଧମାଣେ ଜମି ଜଣକା
କୋରଖରେ ସେ ପୁଣି ଚକା
ଗାଁର ସର୍ବସ୍ୱ କରଜ କରନ୍ତି ଜଣେ ଦୁଇଜଣ ବଡ଼୍ୱେର ସେଠ ।

*　　*　　*

ମୋ ଭାଇର ବାଟୀକୁ ବାଟୀ
ଅମାରି ତ ପଡ଼ୁଛି ଫାଟି

ମୋର ଘରେ ନାହିଁ ଛପର କୁଟାଟି
ମୋ ଭାଇ ଶୋଇଛୁ ଛପର ଖଟ ।"

କବି ବାଞ୍ଛାନିଧି ଥିଲେ ସଂସ୍କାର ପ୍ରାଣ । କେବଳ ରାଜନୈତିକ ସ୍ୱାଧୀନତା ପାଇଁ ସେ ବ୍ୟାକୁଳ ନଥିଲେ, ସେ ଚାହୁଁଥିଲେ ଦେଶର ସର୍ବାଙ୍ଗୀନ ଉନ୍ନତି । ସେ ଅନୁଭବ କରୁଥିଲେ ଯେ ଯେତେବେଳ ପର୍ଯ୍ୟନ୍ତ ଛୁଆଁ ଅଛୁଆଁର ବାଡ ତିଆରି ହୋଇଥିବ ସାମାଜିକ ଜୀବନ ଅତ୍ୟନ୍ତ ଦୁର୍ବଳ ହୋଇଯିବ । ଧର୍ମଧ୍ୱଜାଧାରୀ ଭଣ୍ଡ ପୁରୋହିତଗଣ ନିଜର ସ୍ୱାର୍ଥ-ପାଇଁ ପୁରାଣର ଅର୍ଥ କରିଛନ୍ତି । ଜାତି ଅଜାତି ତିଆରି କରିଛନ୍ତି ଏବଂ ନାନା ସାମାଜିକ ବ୍ୟଭିଚାର ମାଧ୍ୟମରେ ନିଜର ସ୍ୱାର୍ଥ ହାସଲ ପାଇଁ ଉଦ୍ୟମ କରୁଛନ୍ତି । ଏହି ଅତ୍ୟାଚାରରୁ ଦେଶବାସୀଙ୍କୁ ମୁକ୍ତ କରିବାକୁ ହେବ । ନଚେତ ଏ ଦେଶର ପ୍ରଗତି ଯେଉଁ ତିମିରେ ସେଇ ତିମିରେ । ସଂସ୍କାରଧର୍ମୀ କବି ତେଣୁ ଗାଇଛନ୍ତି—

"ଛୁଆଁ ଅଛୁଆଁ ଆଚାର
ଜାତି ଅଜାତିର ବିଚାର
ନିଜର ସ୍ୱାର୍ଥଲାଗି ପରଚାର କରନ୍ତି ପୁରାଣକାର
ପାପ ପୁଣ୍ୟ ଅବା ଜାତି ଅଜାତିକି ଧନ ଦେଇ ତଉଲନ୍ତି ।"

ଯେଉଁ କବିତାରେ ଜାତୀୟ ଆଶା ଆକାଂକ୍ଷା ରୂପାୟିତ ହୁଏ, ତାହା ହେଉଛି ଖାଣ୍ଟି କବିତା । ଯାହା ଜୀବନକୁ ଅନୁପ୍ରେରିତ କରେ ଏବଂ ଅନ୍ଧକାର ରାଜପଥରେ ଆଲୋକର ବର୍ତ୍ତିକା ଜାଳିଥାଏ, ତାହା ହେଉଛି ପ୍ରକୃତ ପ୍ରଗତିଧର୍ମୀ ସାହିତ୍ୟ । ଏହି ବିଚାରରେ ଆଲୋଚନା କଲେ ବାଞ୍ଛାନିଧିଙ୍କ କବିତା ଅତ୍ୟନ୍ତ ଜୀବନଧର୍ମୀ ଏବଂ ରସୋତ୍ତୀର୍ଣ୍ଣ ମନେ ହୋଇଥାଏ । ସେ ହେଉଛନ୍ତି ସାମାଜିକ ଚେତନାବୋଧର ଜାଗ୍ରତ ପ୍ରହରୀ । ସାର୍ଥକ ସାହିତ୍ୟ ଯଦି ବାସ୍ତବିକ ଜୀବନର ପ୍ରତିଛବି ବହନ କରିଥାଏ, ତେବେ ବାଞ୍ଛାନିଧିଙ୍କ କବିତା ଜାତୀୟ ଯୁଗର ଆଭିମୁଖ୍ୟକୁ ଅତ୍ୟନ୍ତ ସାର୍ଥକ ଭାବରେ ରୂପାୟିତ କରିଅଛି ବୋଲି ସ୍ୱୀକାର କରିବାକୁ ହେବ ।

—୦—

# କବି ସ୍ମାରକ

● ଶାନ୍ତିପ୍ରିୟା ଜେନା

ଗୌରବ ମଣ୍ଡିତ ଭାରତେ ବନ୍ଦିତ
ବିପ୍ଳବୀ ବରେଣ୍ୟ ବୀର
ଅକ୍ଷୟ କୀରତି ଅର୍ଜିଲ ଉତ୍କଳେ
ଜିଣିଲ ସର୍ବ ଅନ୍ତର ।

ଅଦ୍ଭୁତ ସାହସେ କବିତା ରଚିଲ
ସଂଗ୍ରାମ ସାଗର ମନ୍ଥି
ତମସା ଜଡ଼ିତ ଓଡ଼ିଶା ବକ୍ଷରେ
ଖେଳାଇଲ ନବ ଜ୍ୟୋତି ।

ବଂଗ-ବାଘାଧିର ଝାର ପୁରପଲ୍ଲୀ
ସେ ମନ୍ତ୍ର ଘୋଷିଲ ଧୀର
ଶହ ଶହ ମୁଗ୍ଧ ସୈନ୍ୟ ଧାଡ଼ି ଦେଲେ
ତୁମ ମନ୍ତ୍ର ଅସ୍ତ୍ର କରି ।

ଶିହରି ଉଠିଲା ଦିଲ୍ଲୀ ସିଂହାସନ
ଡାକ ବାର୍ତ୍ତା ଘନ ଘନ
ସ୍ୱାଧୀନତା ରଣ ପ୍ରାରମ୍ଭରୁ କାରା—
ବରଣେ କାଟିଲ ଦିନ

ବିକଶିତ ହେଲା କାମନା କୁସୁମ
ସାଧନା ହୋଇଲା ସିଦ୍ଧି
"ଡାକେ ଚରବାଘ" "ମୋହନ ବଇଁଶୀ"
କର୍ଣ୍ଣ କୁହରକୁ ଭେଦି ।

କାନ୍ଦୁଥିଲା ବସି ଉତ୍କଳ ଜନନୀ
ଝରତେ ନୀର ଲୋଚନ

ତୁମର ବାଗ୍ମିତା ସରଣୀ ଜନମ
କରଥିଲା ବିମୋହନ ।
ଦେଶ ଦଶ ଅର୍ଥେ ଆଣିଲ ସଙ୍ଗରେ
ଯେନ ମନ୍ଦାକିନୀ ନୀର
ଅନଳ କୁଣ୍ଡରୁ ଭଗୀରଥ ସମ
ଫୁଟାଇ କବିତା ଧାର ।
ସତ୍ୟ କର୍ମ ନିଷ୍ଠ ବରେଣ୍ୟ ବଳିଷ୍ଠ
ଦେଶବନ୍ଧୁ ତ୍ୟାଗୀ ବୀର
ଲେଖନ ତୁମର ବଜ୍ର ତେଜ କବି
ଏତିକି କାମନା ମୋର ।



# ଅତୀତ ସ୍ମୃତିରୁ ଖିଏ

● ବୀର କିଶୋର ଭୂୟାଁ

ଗାନ୍ଧି ଇରଉଇନ ସନ୍ଧି ପରେ ପୁଣି ଯେତେବେଳେ ଜାତୀୟ ଆନ୍ଦୋଳନ ତେଜି ଉଠିଲା, ଲୋକେ ବହୁ ସଂଖ୍ୟାରେ ଆସି ଆନ୍ଦୋଳନରେ ଯୋଗଦେଲେ । ରାଜ୍ୟମାନଙ୍କରେ ଜେଲଖାନା କଏଦୀରେ ପୂର୍ଣ୍ଣ ହୋଇଗଲା । ସରକାର ବାଧ୍ୟରେ ବିହାର ପ୍ରଦେଶ ରାଜଧାନୀ ପାଟଣା ଠାରେ କରିଥିବା କ୍ୟାମ୍ପ ଜେଲ ମଧ୍ୟ ପୂର୍ଣ୍ଣ ହୋଇଗଲା । ଗ୍ରାମାଞ୍ଚଳରୁ ବହୁ ଛୋଟ ଛୋଟ ପିଲା ଆସି ଆନ୍ଦୋଳନରେ ଭାଗ ନେଲେ । ସେତେବେଳେ ସେମାନଙ୍କୁ ବାନର ସେନା ଆଖ୍ୟା ଦିଆ ଯାଇଥାଏ । ମାଡ଼ ଖାଇଲେ ଭୟରେ ପିଲାମାନେ ଘରକୁ ଫେରିଯିବେ ଭାବି ତତ୍କାଳୀନ ଆହେଦ ସାହେବ ନାମକ ଜଣେ ବିଚାରପତି ଜେଲ ଦଣ୍ଡ ଦେବା ପରିବର୍ତ୍ତେ ବେତମାଡ଼ ଦଣ୍ଡାଦେଶ କରୁଥିଲେ ।

ପିଲାମାନେ ଭୟ ପାଇବା ପରିବର୍ତ୍ତେ ଦ୍ୱିଗୁଣ ଉତ୍ସାହରେ ଯୋର ସୋରରେ ଅଫିମ ଦୋକାନ ଓ ବିଦେଶୀବସ୍ତ୍ର ଦୋକାନ ସମ୍ମୁଖରେ ପିକେଟିଂ କରିବାକୁ ଆଗେଇ ଯାଉଥିଲେ । ବେତମାଡ଼ ଖାଇ ହାତ ଫୁଲିଉଠେ, ହାତରେ ଖାଇ ପାରନ୍ତି ନାହିଁ, ଲୁଗା ପେଣ୍ଟ ପିନ୍ଧି ପାରନ୍ତି ନାହିଁ, ତଥାପି ଜନ୍ମଗତ ଦାବୀ ସ୍ୱାଧୀନତା ହାସଲ ପାଇଁ କର୍ତ୍ତବ୍ୟ କର୍ମରୁ ହଟନ୍ତି ନାହିଁ ।

ସେତେବେଳେ, ବର୍ତ୍ତମାନର ଭୂଦାନ ନେତ୍ରୀ ଶ୍ରୀମତୀ ରମା ଦେବୀ, ସୁନାମଣି ଦେବୀ ପ୍ରଭୃତି ସେହି ବାନର ସେନାମାନଙ୍କର ମାତୃବତ ସେବା ଯତ୍ନର ଭାର ନେଇଥାନ୍ତି । ସେହି ପିଲାମାନଙ୍କୁ କର୍ମ ତତ୍ପର କରିବାକୁ, ଉତ୍ସାହ ପ୍ରେରଣା ଯୋଗାଇବାକୁ ବର୍ତ୍ତମାନର ଜାତୀୟ ବୀରକିଶୋର-ଦାସଙ୍କ ସଂଗୀତ ଅଧିକ ସହାୟକ ହୋଇଥାଏ ।

ବେତମାଡ଼ ଖାଇ ପିଲାମାନେ କୋର୍ଟରୁ ଫେରି ଆସିବା ବେଳେ ସେମାନଙ୍କ କଣ୍ଠରୁ ନିସୃତ ହୁଏ ଭାବପୂର୍ଣ୍ଣ କରୁଣ ସଙ୍ଗୀତ ।—"ଭାଇହେ ମାର

କେତେ ବେତ ମାରିବ···"ସଂଗ୍ରାମ କ୍ଷେତ୍ରରେ ସଙ୍ଗୀତ ଅପରିହାର୍ଯ୍ୟ । କବିଙ୍କ ଲେଖନୀ ମୁନରୁ ନିସୃତ ସଂଗୀତ ତରବାରୀର ଧାର ଠାରୁ ମାରାତ୍ମକ ଓ ତୀକ୍ଷ୍ଣ । କବିଙ୍କ ଓଜସ୍ୱିନୀ ଜାତୀୟ ସଂଗୀତରେ ଉଦ୍‌ବୁଦ୍ଧ ହୋଇ ଶହ ଶହ ପରଦା କୋଣରେ ଥିବା ନାରୀମାନେ ପରଦା ଠେଲି ସ୍ୱେଚ୍ଛାରେ ଦେଶ ଜାତିର ସେବା କରି ଜେଲ ବରଣ କରିବାକୁ ଦ୍ୱିଧା ବା କୁଣ୍ଠା ମନେ କରୁ ନଥିଲେ ।

ସେତିକିବେଳେ ବଙ୍ଗଳାଦେଶର ଗୋଟିଏ କବିତା ଦେଶସାରା ଉନ୍ମାଦନା ଖେଳାଇ ଚହଳ ପକାଇ ଦେଇଥିଲା "କାରାର ଏ ଲୌହ କପାଟ, ଭେଙ୍ଗେ ଫେଲ୍···" ସମୟ ଉପଯୋଗୀ ଭାବେ କବି ବୀରବାବୁ ଲେଖି ଯାଉଥିଲେ ତାଙ୍କର ଜାତୀୟ ସଂଗୀତ—

"ଜାଗିଲରେ ଦେଶ ଜାଗିଲା ଲାଗିଲାରେ ଯୁଦ୍ଧ ଲାଗିଲା"
"ଷେଣ୍ଢକୁ ନାଲି କନା ପରି, ସର୍କାରକୁ ହେଲା ଏ ବଇରୀ···"
"ଅରି ଫେରିନାହିଁ ଯୁଦ୍ଧ ସରିନାହିଁ, ଆସ ମୋ ଶିବିରରେ ଆସ ଭାଇ
"ଉତ୍କଳ ହିମାଞ୍ଚଳ କହେ ସୀମାଚଳେ, କି ସଂଗୀତ ସ୍ୱରେ
ଚିଲିକା କଲ୍ଲୋଳେ···"

ଏହିପରି ବହୁ କବିତା ପୁରପଲ୍ଲୀର ନରନାରୀଙ୍କ ଧମନୀରେ ପ୍ରବାହିତ ହେଉଥିବା ଶୀତଳ ରକ୍ତକୁ ଉଷ୍ଣତାରେ ପରିଣତ କରି ପକାଉଥିଲା ।

ଫୌଜରେ ଯେପରି ଜଣେ ବ୍ରିଗେଡିଅର ସେନାଧ୍ୟକ୍ଷ ଯୁଦ୍ଧ ପରିଚାଳନା କରନ୍ତି ସେହିପରି ଆମ ସ୍ୱଦେଶୀ ଆନ୍ଦୋଳନରେ କବି ବୀରବାବୁଙ୍କ ସଙ୍ଗୀତ ନିର୍ଦ୍ଦେଶ ଥିଲା ଜଣେ ସେନାନାୟକଙ୍କ ନିର୍ଦ୍ଦେଶ ଭଳି ।

ଜାତୀୟ କବି ବୀରବାବୁଙ୍କ କବିତା ଗୁଡ଼ିକ ତେଜୋଦୀପ୍ତ । କିନ୍ତୁ ତାଙ୍କ ସ୍ୱଭାବ ଚରିତ୍ର ହାବଭାବ ଭାରି ସାଧାରଣ, ଉଦାର ଓ ଅମାୟିକ । ବୀରବାବୁଙ୍କ କର୍ମନିଷ୍ଠା, ତ୍ୟାଗ ଓ ସ୍ୱଦେଶପର ସଂଗୀତ ପ୍ରେରଣାର ଉଗ୍ରତା ଲାଗି ଏ ଜାତି ତାଙ୍କୁ ଯଥେଷ୍ଟ ସମ୍ମାନ ଦେଇ ପାରି ନାହିଁ ।

ବହୁବର୍ଷ ବ୍ୟବଧାନ ପରେ ଅର୍ଥାତ୍ ମୁଁ ଶେଷଥର ୧୯୩୪ ମସିହାରେ ଜେଲଖାନାରୁ ମୁକ୍ତ ହୋଇ ଦୀର୍ଘ ତେଉଦବର୍ଷ କାଳ ଭାରତ ବାହାରେ ରହିବା ହେତୁ ବୀରବାବୁଙ୍କ ସଙ୍ଗେ ଦେଖା ସାକ୍ଷାତ ଆଳାପ ଆଲୋଚନାର ସୁଯୋଗ ସୁବିଧା ନଥିଲା । ପ୍ରଜାତନ୍ତ୍ର ପ୍ରଚାର ସମିତିର ବିଷୁବ ମିଳନରେ ହଠାତ୍ ଦେଖା ହୋଇଗଲା । ତାଙ୍କୁ ପ୍ରଣାମ ଜଣାଇଲି । ସେ ହାତ ଉଠାଇ

ପ୍ରତି ଅଭିବାଦନ ଜଣାଇଲେ ମାତ୍ର ଚିହ୍ନି ପାରିଲେ ନାହିଁ । ଚିହ୍ନିବା ଉଦ୍ଦେଶ୍ୟରେ ମୋ ମୁହଁକୁ କେବଳ ଅନାଇ ରହିଲେ ।

ପଚାରିଲି ଚିହ୍ନି ପାରୁଛନ୍ତି ?

ସେ ଟିକିଏ ଇତଃସ୍ତତ ହୋଇ ମୁଣ୍ଡ ହଲା ଇଙ୍ଗିତରେ ମନା କଲେ । ପରିଚୟ ଦେଲି । ମୁଁ ଶରତ ଭୂୟାଁ । ଆପଣଙ୍କ ମୋକଦ୍ଦମା ଜିଲ୍ଲା ମାଜିଷ୍ଟ୍ରେଟଙ୍କ କୋର୍ଟରେ ଥିବାଦିନ ମୁଁ ତାଙ୍କ କୋର୍ଟ ରେଡ଼ି କରିଥିଲି । ଅତୀତ ଘଟଣାକୁ ମନେ ପକାଇ, ସସ୍ନେହେ ମୋତେ ଧରି ପକାଇଲେ । କାରଣ ସେଦିନ ଆମ୍ଭମାନଙ୍କୁ ଯେଉଁ ଶୋଷଣ ମାଡ଼ ତା ଦେଖି ନିଜେ ମାଜିଷ୍ଟ୍ରେଟ ଦୁଃଖ ପ୍ରକାଶ କରିଥିବା କଥା ଶୁଣିବାରୁ ଆମକୁ ଜେଲ ଭିତରେ କହୁଥିଲେ । ତାପରେ ସାମାନ୍ୟ ଦୁଃଖ ସୁଖ, କଥାବାର୍ତ୍ତା ! ଯେତେବେଳେ ସେ ମୋଠାରୁ ଶୁଣିଲେ ଶେଷଥର ଜେଲରୁ ବାହାରି ମୁଁ ବର୍ମା ପଳାଇ ଯାଇଥିଲି ଏବଂ ନେତାଜୀ ସୁଭାଷ ବୋଷଙ୍କ ଜାଣପୂ ବାହିନୀରେ ଜଣେ ସୈନିକ (ମେଡ଼ିକାଲ ଅଫିସର ) ଥିଲି ଏବଂ ଚଉଦବର୍ଷ ପରେ ଦେଶକୁ ଫେରିଆସି ଗତ ନିର୍ବାଚନରେ ସାଲେପୁର ନିର୍ବାଚନ ମଣ୍ଡଳୀରୁ ଓଡ଼ିଶା ବିଧାନ ସଭା ପାଇଁ ଜଣେ ସ୍ୱାଧୀନ ପ୍ରାର୍ଥୀ ରୂପେ ପ୍ରତିଦ୍ୱନ୍ଦ୍ୱିତା କରିଥିଲି ସେ ଅତୀବ ପ୍ରୀତ ହୋଇ ମୋତେ ତାଙ୍କ ଘରଠାକୁ ଯିବାକୁ କହିଥିଲେ ।

ସେତେବେଳକୁ ତାଙ୍କ କଥାଭାଷାରୁ ଜଣା ପଡ଼ୁଥାଏ ସେ ଯେପରି କିଛି ଶାରୀରିକ ପୀଡ଼ା ଅନୁଭବ କରୁଛନ୍ତି । ପଚାରିଲି, ସ୍ୱାସ୍ଥ୍ୟ କଣ ଭଲନାହିଁ ।

ସେ ସଂକ୍ଷେପରେ କହିଲେ—ନାହିଁ । ଖଣ୍ଡେ ରେକ୍ସା ଡାକି ଦିଅନ୍ତିକି ? ମୁଁ ଚାଲିଯିବି । ଆଜି ଏଠି ରହିବାକୁ ଭଲ ଲାଗୁନାହିଁ ।

ରେକ୍ସା ଖଣ୍ଡେ ଡାକି ଆଣି ତାଙ୍କୁ ଧରି ନେଇ ରେକ୍ସାରେ ବସାଇ ବିଦାୟ ନେଲି । ଏବେବି ତାଙ୍କ ଲେଖନୀ ଚାଲିଛି । ନେତାଜୀ ଜୟନ୍ତୀକୁ କବିତା ପଠାନ୍ତି । ଈଶ୍ୱରଙ୍କ ଠାରେ ପ୍ରାର୍ଥନା କରେ ସେ ଦୀର୍ଘ ଦିନ ବଞ୍ଚିରହି ଆମ୍ଭମାନଙ୍କୁ ପ୍ରେରଣା ଯୋଗାଉ ଥାନ୍ତୁ । ତାଙ୍କ ପ୍ରତି ଆଜି ମୋର ଏତିକି ବିନୀତ ଶ୍ରଦ୍ଧାଞ୍ଜଳି ।

# ଆମେ ଦେଉ ଆଜି ସମ୍ବର୍ଦ୍ଧନା

● ଶ୍ରୀ ବଂଶୀଧର ମିଶ୍ର

ଆମେ ଦେଉ ଆଜି ସମ୍ବର୍ଦ୍ଧନା
ତୁମ ପାଇଁ ଯୋଗ୍ୟ ହେଉ ବା ନହେଉ
କରୁଛୁ ମିନତି ହେଉ ଘେନା । ୦ ।

ପଂଚୁ ସ୍ୱାଧୀନତା ରଜତ ଜୟନ୍ତୀ
ପଚିଶ ବରଷ ଯାଉଅଛୁ ବିତି ।
ସ୍ୱାଧୀନତା ଯୁଦ୍ଧେ ସାଜିଲ ସୈନିକ
ନମାନିଲ ତୁମେ କାହା ମନା । ୧ ।

ସ୍ୱାଧୀନତା ରଣେ ତୁମେ ଦେଲ ଝାସ
ବିତେଇଲ କାରା ବରଷ ବରଷ
ଭୁଲି ଦାରାସୁତ ନିଜ ଭବିଷ୍ୟତ
ସାର ହେଲା ପେଟେ ଓଦାକନା । ୨ ।

ଗୋରା ସରକାର କଲା ଅତ୍ୟାଚାର
ଦମନ ଲୀଳାର ନାହିଁ ପଟାନ୍ତର
ପୋଲିସ ବେତର ଦାଗ ଲିଭି ନାହିଁ
ଲାଠିମାଡ଼େ ହାଡ଼ ହେଲା ଚୂନା ।୩।

ଜାତିର ଜନକ ବାପୁ ଦେଲେ ଡାକ
ଅହିଂସା ସମରେ ଝାସ ଦେଲେ ଲୋକ
ହେଲା ଆନ୍ଦୋଳନ ଅସହଯୋଗର
ତୁମେ ଥିଲ ଜଣେ ମୁଖ୍ୟ ସେନା । ୪ ।

କଲ ସତ୍ୟାଗ୍ରହ          ମାରିଲ ଲବଣ
ବିଦେଶୀ ଜିନିଷ          କରିଲ ବର୍ଜ୍ଜନ
'କର ଅବା ମର'          ଏହି ମନ୍ତ୍ର ସାର
ଗାଇ ବୁଲୁଥିଲ ଧରି ବାନା । ୫ ।

ଅହିଂସା ଯୁଦ୍ଧର          ହେ ବୀର ସୈନିକ
କଲମ ଯେ ଥିଲା          ତୁମର ବନ୍ଧୁକ
କାବ୍ୟ କବିତାରେ          ବିପ୍ଳବ କଲ
ଗୀତେ ଆଣିଦେଲ ଉନ୍ମାଦନା । ୬ ।

ତୁମ "ରଣଭେରୀ"          ଉଠିବାରୁ ବାଜି
ବିଦେଶୀ ଶାସକ          ନଦେଗଲା ଭାଜି
"ରଣ ଦୁନ୍ଦୁଭି"          ଶବଦେ କମ୍ପିଲା
ଦେଖୁ ହଟିଗଲେ ଶତ୍ରୁ ସେନା । ୭ ।

କି "ମୋହନ ବଂଶୀ"          ବଜାଇଲ କବି
ଶୁଣି ଉଠେ ହେଲେ          ସ୍ୱାଧୀନତା ରବି
ପରାଧୀନତାର          ଅମା ଅନ୍ଧକାର
ଭାରତ ଆକାଶୁ ଗଲା ପିନା । ୮ ।

"ନଗଡ଼ ନର୍ତ୍ତନ"          ସେ "ଫୁଲ ଚନ୍ଦନ"
ପ୍ରାଣେ ଆଣିଦିଏ          ନୂତନ ସ୍ପନ୍ଦନ
ପଢ଼ିଛି ଯେ ଥରେ          ଭୁଲି ସେ ନ ପାରେ
ଧନ୍ୟ ଧନ୍ୟ କବି ଧନ୍ୟ ସେ ରଚନା । ୯ ।

ସରିଲା ସମର          ହେ ବିଜୟୀ ବୀର
ଲୋଡ଼ିନା ଜୀବନେ          ଆସନ ମନ୍ତ୍ରୀର
ପଦ ପଦବୀକୁ          କରି ତୁଚ୍ଛଜ୍ଞାନ
କଲ ତୁମେ ବାଣୀ ଆରାଧନା । ୧୦ ।

ମୋ ଦେଶେ "ମୋ ଦେଶ" କରିଲ ପ୍ରତିଷ୍ଠା
ସାହିତ୍ୟ ସାଧନେ ଧନ୍ୟ ତୁମ ନିଷ୍ଠା
ଶିଶୁ ସାହିତ୍ୟର ହେବାକୁ ପ୍ରସାର
ଚିତ୍ତେ ଚିନ୍ତାକଲ ମହାମନା । ୧୧ ।

ଏ ଦେଶ ଏ ଜାତି ତୁମ ପଦେ ଋଣୀ
ହେଉ ସମ୍ବର୍ଦ୍ଧନା ତୁମ ଗୁଣ ଗୁଣି
ତୁମେ ଏ ଜାତିର ହେ "ଜାତିପୁଙ୍ଗବ"
କରୁ ଆଜ ତୁମ "ଅରଚନା" । ୧୨ ।

# ଜାତୀୟ କବିଦ୍ୱୟଙ୍କ ପ୍ରତି

● ଶ୍ରୀ ଯଶୋବନ୍ତ ମଲ୍ଲୀକ

ରାଗ-ରେଖ୍ତି

ଉତ୍କଳ ଜନନୀ ହୃଦ    ପଦକ କୋବିଦ ବୃନ୍ଦ
ମଧ୍ୟରେ ହୀରକ ତୁମ୍ଭେ ହେ ବୀର ! କବି
କବିତାର ଛନ୍ଦେ ଛନ୍ଦେ    ପ୍ରସରିଲା ମନ୍ଦେ ମନ୍ଦେ
ସ୍ୱଦେଶ ପ୍ରୀତି ପିୟୂଷ ମାନସ ରବି
ରବିଚଳ ବଳ ସୁମତି
ମୈତ୍ରୀ ପ୍ରୀତି ଚୁହାଇଲ ଏ ବସୁମତି—୧

ଧମନୀର ପ୍ରତିତନ୍ତ୍ରୀ    ଖେଳୁଥିଲା ଦେଶ ପ୍ରୀତି
ବିପ୍ଳବ ସଂଗୀତ ବନ୍ତି ଜାଳ ମାନସେ
ତେଜି ଗୌରବର ଆଶା    ଧନମାନ ପଦ ଲିପ୍ସା
ଝାସ ଦେଲ ସ୍ୱାଧୀନତା ଯଜ୍ଞ ସରସେ
ରସ ଆଶ ଭ୍ରଷ ବିଭୂତି
ମାତୃ ମୁକ୍ତି ପାଇଁ ଦେଲ ପ୍ରାଣ ଆହୁତି—୨

ବ୍ରିଟିଶ ଶାସନ ମାତି    ଛିନ୍ନ କର ମହାମତି
ହସ୍ତରେ ଶୃଙ୍ଖଳ ଗତି କାରାବରଣ
ବଜାଇ କବିତା ତୂରୀ    ନେନ୍ ବହୁଥିଲ ବାସୀ
କମ୍ପୁଥିଲ ଗୁଣ୍ଡ ଅରି ଦର୍ପେ କଷଣ
ସହିଅଛ କତ ପ୍ରହାର
ବର୍ଣ୍ଣିବାକୁ ମୁଖେ ଭାଷାଅଛି କାହାର ?—୩

କୋଟି ପାଟି ଏକ ହୋଇ    ତୁମ୍ଭର କବିତା ଗାଇ
ସ୍ୱାଧୀନ ସଂଗ୍ରାମ ସିନ୍ଧୁ ପଡେ ଉଚ୍ଛୁଳ

ତୁମ ସଙ୍ଗେ ରକ୍ତ ଛନ୍ଦ       ଢାଳିଦେଲେ କେତେ ବନ୍ଧୁ
ବ୍ରିଟିଶ ବନ୍ଧୁକେ ଦେଲେ ପରାଣବଳି
ଧନ୍ୟ ତବ ଜନତା ଶକ୍ତି
ଉନ୍ମାଦ ପାଗଳ କଲ ମାନବ ଜାତି —୪

ହେ ବୀର ବୀରକିଶୋର       କଣରେ ମୋହିଲ ନର
କମ୍ପିଲ ଉତ୍କଳ ପୁର, ବନ ପ୍ରକୃତି
ଗଗନେ ପବନେ ମିଶି       ପ୍ରତି କଣ୍ଠେ ଯାଏ ଭାସି
ହଟାଅ ରକ୍ତ ପିପାସୀ ଶାସକ ଜାତି
"ଡାକେ ଚରବାସୀ" "ମୋହନ"
ଶତ୍ରୁ ଶିର କାଟି ପିଅ ଶୋଣିତ ଜନ —୫

ଧନ୍ୟ ଆହେ ବାଞ୍ଛାନିଧି !      କେଉଁ ମନ୍ତ୍ରେ ଲଭି ସିଦ୍ଧି
ବଧିରେ ମୋହିଲ ବଧି ସର୍ଜନା ବଳ
ବଳ ବଳ ମହାବଳୀ       ଟଳି ପାଦେ ଦେଲ ଢଳି
ବରଚ ଜନତାବଳ ରକତ ଢାଳି
କୋଟି ଜନ ମାନସ ବନ୍ଧୁ
ବରେଣ୍ୟ ହେ କବିବନ୍ଧୁ ଉତ୍କଳ ଇନ୍ଦୁ —୬

ତୁମ୍ଭ ନାମେ ବାଜେ ବାଜା       ତୁମ୍ଭ ନାମେ ଉଡ଼େ ଧ୍ୱଜା
ତୁମ୍ଭ ପଦ ହେଉ ପୂଜା ଏ ବସୁମତୀ
ବିଶ୍ୱପ୍ରେମେ ତବ ମୂର୍ତ୍ତି       ରଜୁ ଥାଉ ଛିତ କୀର୍ତ୍ତି
ଜନତା ମାଧୁରୀ ସ୍ମୃତି ହେ ମହାମତି
କି ଦେଇ ତୋଷିବୁ ପଦୁରେ
କର୍ମଜ୍ଞାନ ଶୂନ୍ୟ ଭକ୍ତି ନାହିଁ ଅନ୍ତରେ —୭



# ଗଣକବି ସ୍ୱର୍ଗତ ବଂଛାନିଧି

● ଶ୍ରୀ ହରିହର ପଣ୍ଡା

ମନେ ପଡ଼େ ମୁହିଁ ବାଳକ କାଳରେ
ଧାଉଁଥିଲି ପଥେ ଶୁଣିବି ଗୀତ
ପ୍ରଭାତ ଗମ୍ଭୀରେ ଗାଉଥିଲ ଯେବେ
ହେ ବିପ୍ଳବ କବି ପୂତ ସଂଗୀତ ।
ଦୁଃଖିନୀ ଭାରତ, ଦୁଃଖିନୀ ଜନନୀ,
ଉତ୍କଳ ବାସୀଙ୍କ ଦୁଃଖ ଯାତନା
ବିଦେଶୀ ଶାସନ ନିର୍ମମ କାହାଣୀ
ଆଣିଥିଲା ଦେଶେ ନୂଆ ଚେତନା ।
ଯେ କାଳରେ ବଂଗଭୂମି ଲଭିଥିଲା
ଦେଶ ବତ୍ସଳ ବିପ୍ଳବ 'ମୁକୁନ୍ଦ'
ସେ କାଳରେ ତୁମେ ଆମର ଦେଶରେ
ଗାଇଥିଲ ବହୁ ସ୍ୱଦେଶ ଛନ୍ଦ ।
ଭଜିଥିଲ ସଦା ଧନଜନ ଯୁକ୍ତା
ଭାରତ ମାତାର ଶୁଭ୍ର ଚରଣ
ସେ ସେବାରେ ନିଜ ଜୀବନ ଅରପି
ଜାତୀୟ କବିତା କରିଲ ଗାନ ।
ଗାଇଲ କିରୂପେ ଛୁଆଁ ଓ ଅଛୁଆଁ
ହିନ୍ଦୁ ମୁସଲିମ୍ ନାନା ବିଭେଦ
ଗୋରା ଶାସନକୁ ଦେଲ ବହୁବଳ
ଆଣିଲା ଏ ଦେଶ କେତେ ବିପଦ ।
ବିଦେଶୀ ବେପାରୀ ବିଦେଶୀ ଶାସନ
କିପରି ଆମକୁ କଲେ ଭିକାରୀ
ଗୋଲାମି ପଣରେ ସଲାମ ଶିଖାଇ
କଉଶଳେ ନେଲେ ଏ ଦେଶ ଶିରୀ ।

ଏ ଦେଶର ଶିଶୁ ନ ପାଆନ୍ତ କ୍ଷୀର
ନ ପାଏ ଗୋମାତା ତାର ଯତନ
ନକଲ ଦରବ ନଶା ବିଳାସରେ
କ ରୂପେ ନରହେ ଏଦେଶ ଟାଣ ।
ଜଣାଇଲ ଦେଶେ ଗୁହାରରେ କେବେ
ନ ଲଭନ୍ତି କେହି ଜାତି ମୁକତି
ଦୁଃଖୀ କେଉଁ କାଳେ ନ ହୋଇଛି ସୁଖୀ
ଭିକ୍ଷା ମାଗି ଅବା କରି ମିନତି ।
ସଲମି ଗୋଲମି ହାକମ ମିଜାଜ
ମଦ ଭାଙ୍ଗ ପଠା ଅଫିମ ନଶା
ବିଦେଶୀ ସାହେବ ଫେସନ କୁଫଳ
ପ୍ରକାଶ କରିଲ ତୁମର ଭାଷା ।
ଚାହିଁଥିଲ ଆମ ଦେଶ ବସ୍ତି ଲୋକେ
ଚଳାଇବେ ଆମ ଦେଶ ଶାସନ
ଦେଖୁଛ କି ଆଜ ସରଗରେ ରହି
ତୁମରି କାମନା ହେଲା ପୂରଣ ।



# ମାତୃଭକ୍ତ ବାଂଛାନିଧି

● ଶ୍ରୀ ସୁଧାକର ଦାଶ

ମୋର ମନେ ଅଛି, ତୃତୀୟ ଶ୍ରେଣୀରେ ପଢ଼ୁଥାଏଁ । ସରସ୍ୱତୀ ପୂଜା ଉପଲକ୍ଷେ ସ୍କୁଲର ହେଡ ପଣ୍ଡିତ ମହାଶୟ ବିଦ୍ୟାଳୟର ପୁରାତନ ଛାତ୍ରମାନଙ୍କୁ ସଙ୍ଗଠନ କରି 'ହରିଶ୍ଚନ୍ଦ୍ର' ନାଟକ ମଞ୍ଚସ୍ଥ କରାଇଥିଲେ । ଆମେ କେତେଜଣ ଛାତ୍ର ନାଟକ ଆରମ୍ଭରେ ଦେଶ ବନ୍ଦନାଟିଏ ଗାଇ ଥିଲୁଁ ।ତାହା ହେଲା,—

ଧନ ଜନ ଯୁକ୍ତା ଭାରତ ମାତା
ନମୋ ନମୋ ଜନନୀ ଶ୍ରୀ ଚରଣେ
ସନ୍ତାନ ବନ୍ଦେ ପ୍ରେମାନନ୍ଦେ ଯା ଚିତ୍ତ କରୁଣା ମା ଶରଣେ ।

ଦାନବୀର ହରିଶ୍ଚନ୍ଦ୍ର ବିଶ୍ୱାମିତ୍ରଙ୍କୁ ସର୍ବସ୍ୱ ଦାନ କରିବା ପରେ ନାଟକ ମଞ୍ଚରେ ଆଉ ଗୋଟିଏ ଗୀତ ବୋଲା ଯାଇଥିଲା,—

"ଦାନ କି ନୂଆ ଭାବନା ଗୋ ଏହି ଦେଶେ, ଭାରତବର୍ଷେ ।"

ପରବର୍ତ୍ତୀ ସମୟରେ ହାଇସ୍କୁଲରେ ପଢ଼ିବାବେଳେ ପଠନ ଉପାୟ ଅବଲମ୍ବନ ଉଦ୍ଦେଶ୍ୟରେ ମୁଁ ନିଜେ ଯେତେବେଳେ ପାଲି ଗାଇଲି, ସେତେବେଳେ ମାତୃ ବନ୍ଦନାର ସଙ୍କେତ ସ୍ୱରୂପ ଗାଉଥିଲି—

'ମା' ଗୋ, ତୁହି ଭବଦାରା"
ଭବାନୀ ଭବ ମୋହିନୀ ଉମା ହିମପୁନୀ ତାରା"

ଏସବୁ ସଙ୍ଗୀତରେ ଗଣଜୀବନ ଏକା ବେଳକେ ମଜ୍ଜି ଯାଉଥିଲା । କିନ୍ତୁ ସେତେବେଳେ ଏ ସଙ୍ଗୀତ ଗୁଡ଼ିକରେ ରଚୟିତାଙ୍କୁ ଜାଣି ନ ଥିଲି । ପରେ ଜାଣିଲି ଆମ ପଡ଼ୋଶୀ ଗ୍ରାମର ବାଞ୍ଛାନିଧି ବାବୁ ଏ ସବୁ

ସଙ୍ଗୀତ ଲେଖିଛନ୍ତି । ତାଙ୍କୁ ଦେଖିବାର ସୁଯୋଗ ମୋତେ ମିଳିନାହିଁ, କାରଣ ମୋର ଆଖି ଫିଟିବା ବେଳକୁ କବି ଇହଧାମ ଛାଡ଼ିଥିଲେ ।

ପରେ ଆଜି ଯେଉଁ ଯାତ୍ରା ବା ଗାନ ଅଭିନୟ ଦେଖାଯାଉଛି, ସେଥିରେ ବାଞ୍ଛାନିଧି ବାବୁଙ୍କର ବନ୍ଧ ସଙ୍ଗୀତ ଆମେ ଶୁଣିଛୁ, କେବଳ ଆମ ଅଞ୍ଚଳରେ ନୁହେଁ, ରାଜ୍ୟର ଚତୁଃଆଡ଼େ ତାଙ୍କ ସଙ୍ଗୀତର ଝଙ୍କାର ଶୁଭୁଥିଲା । ବିଶେଷତଃ ଊନବିଂଶ ସତଚାଳିଶ ମସିହା ଅଗଷ୍ଟ ପନ୍ଦର ତାରିଖର ସ୍ମୃତି ଭୁଲିବାର ନୁହେଁ । ସେଦିନ ଗାଁ ଗହଳରେ ଶୁଭ ସକାଳର ବାତାବରଣ " ଗାଅ ସ୍ୱାଧୀନ ଭାରତ ସ୍ୱାଧୀନ ଭାରତ
ସ୍ୱାଧୀନ ସ୍ୱାଧୀନ ସ୍ୱାଧୀନରେ"
ସଙ୍ଗୀତର ଦ୍ରୁତ ସ୍ୱରରେ ଝଙ୍କୃତ ହୋଇ ଉଠିଥିଲା । ଏବେ ମଧ୍ୟ ସ୍ୱାଧୀନତା ଦିବସ ପାଳନ କରି କୌଣସି କୌଣସି ବିଦ୍ୟାଳୟର ଛାତ୍ରଛାତ୍ରୀମାନେ ଏ ସଙ୍ଗୀତ ଗାଇ ଶୋଭାଯାତ୍ରାରେ ବାହାରନ୍ତି । ଏ ସବୁ ସେହି ବାଞ୍ଛାନିଧି ବାବୁଙ୍କ ରଚନାବଳୀ । ଏବେ ସେ ଜାତୀୟ କବି, ଗଣକବି, ଦରଦୀ କବି ଏହିପରି ବହୁଭାବରେ ପରିଚିତ । ତାଙ୍କର ଏ ସବୁ ଆଖ୍ୟା ଯେ ତାଙ୍କ ପକ୍ଷରେ ଯଥାର୍ଥ, ଏଥିରେ ସନ୍ଦେହ ନାହିଁ ।

କବି ବାଞ୍ଛାନିଧି ଜଣେ କ୍ଷଣଜନ୍ମା ଥିଲେ । ବାସୁଦେବପୁର ଥାନାନ୍ତର୍ଗତ ଇରମ ଗ୍ରାମରେ ୧୮୯୭ ମସିହା ଏପ୍ରିଲ ୨୭ ତାରିଖ ଦିନ ସେ ଜନ୍ମଗ୍ରହଣ କରିଥିଲେ ଏବଂ ୧୯୩୮ ମସିହା ଏପ୍ରିଲ ୧୯ ତାରିଖ ଦିନ ଇହଲୀଳା ସମ୍ବରଣ କଲେ । ଏହି ମାତ୍ର ସମୟର ବ୍ୟବଧାନ ମଧ୍ୟରେ ତାଙ୍କର ବିକାଶ ଓ ବିଲୟ । କୁସୁମ ପରି ନିମିଷେ ବିକଶି ନିମିଷେ ଛାଡ଼ିବା ତାଙ୍କ ଜୀବନର ଧର୍ମ । ତାହାରି ମଧ୍ୟରେ ସେ ଯାହାକିଛି ସୁଗୁଣ-ସୌରଭ ବିତରଣ କରିଯାଇଛନ୍ତି ସେଥିପାଇଁ ସେ ଆଜି 'ଜାତୀୟ କବି' ରୂପେ ସମ୍ମାନିତ ।

କବି ଯୌବନରେ ପଦାର୍ପଣ କଲା ବେଳକୁ ଭାରତର ସ୍ୱାଧୀନତା ସଂଗ୍ରାମ ଆରମ୍ଭ ହୋଇ ଯାଇଥିଲା । ୧୯୧୯ରୁ ୧୯୩୨ ମସିହା ମଧ୍ୟରେ ଘଟି ଯାଇଥିବା ଜାଲିଆନା ଓ୍ୟାଲା ବାଗ ହତ୍ୟାକାଣ୍ଡ, ଅସହଯୋଗ ଆନ୍ଦୋଳନ, ଖିଲଫତ୍ ଆନ୍ଦୋଳନ ଏବଂ ଲବଣ ସତ୍ୟାଗ୍ରହ ସମାଜ-ସମୁଦ୍ରରେ ମନ୍ଥନ ସୃଷ୍ଟି କରିଥିଲା; କବି ବାଞ୍ଛାନିଧି ଏ ସାଗରରେ

ଦେଖା ଦେଇଥିଲେ ଘୂର୍ଣ୍ଣିବାତ୍ୟା ପରି । ମହାତ୍ମା ଗାନ୍ଧିଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ତାଙ୍କର ବାଣୀ ଓ ଆହ୍ୱାନ ସବୁକୁ ସଙ୍ଗୀତ ମାଧ୍ୟମରେ କବି ବାଞ୍ଛାନିଧି ରୂପ ଦେଉଥିଲେ ଏବଂ ତାହାଦ୍ୱାରା ଗଣ-ଜୀବନକୁ ଆନ୍ଦୋଳିତ କରି ଦେଉଥିଲେ ।

ବାଞ୍ଛାନିଧି ବାବୁ ଆଇ.ଏ. ପାଶ କରି ପି.ଏଲ୍ (ପ୍ରାକ୍‌ଟିସ-'ଲ') ପଢ଼ୁଥିଲେ । ଜାତୀୟ ଆନ୍ଦୋଳନରେ ଯୋଗ ଦେବାରୁ ତାଙ୍କର ଲେକ୍‌ଚର ବାଜ୍ୟାପ୍ତ ହେଲା । ସେ କିଛି କାଳ ଭଦ୍ରଖ ସର୍ଭେ ସ୍କୁଲର ପ୍ରଧାନ ଶିକ୍ଷକ ଏବଂ ଲୋକାଲ ବୋର୍ଡ଼ର ଚେୟାରମେନ୍ ରୂପେ କାର୍ଯ୍ୟ କରିଥିଲେ । ଭଦ୍ରକ ଥିଲା ତାଙ୍କର କର୍ମଭୂମି । ସେଇଠି ବସି ସେ ଦେଶ ଜନନୀର ପରାଧୀନତା କଷଣକୁ ଅଙ୍ଗେ ଅଙ୍ଗେ ଅନୁଭବ କରୁଥିଲେ ।

କବି ବାଞ୍ଛାନିଧି ଅନ୍ୟାନ୍ୟ ଓଡ଼ିଆ କବିଙ୍କ ପରି କାବ୍ୟ ଉପନ୍ୟାସ ଲେଖିନାହାନ୍ତି, କେବଳ ଲେଖିଛନ୍ତି ରାଗ ରାଗିଣୀ ମଞ୍ଜୁଳ ସଂଗୀତାବଳୀ, ଯେଉଁଥିରେ ମୁକ୍ତିକାମୀ ପ୍ରାଣର ଅଭିବ୍ୟକ୍ତି ଜୀବନ୍ତ ହୋଇ ଉଠିଛି । ସାମାଜିକ ସଂସ୍କାର ପୂର୍ଣ୍ଣାଙ୍ଗ ନ ହେଲେ ଏକତା ଅସମ୍ଭବ ଏବଂ ଏକତା ସଫଳ ନ ହେଲେ ସ୍ୱାଧୀନତା ଯେ ଅସମ୍ଭବ, ଏହା ସେ ହୃଦୟଙ୍ଗମ କରିଥିଲେ । ତେଣୁ ସମାଜରୁ ଅସ୍ପୃଶ୍ୟତା ଦୂରୀକରଣ, ନିଶା ନିବାରଣ, ସ୍ୱଦେଶୀ ସଂସ୍କୃତି ସଂରକ୍ଷଣ, ଗୋପୂଜା ଆଦି ବିଷୟ-ବସ୍ତୁ ଗୁଡ଼ିକୁ କେନ୍ଦ୍ର କରି ସେ ବହୁ କବିତା ଲେଖିଛନ୍ତି । ତାଙ୍କର ଦେଶ ବନ୍ଦନା ସଙ୍ଗୀତ ଗୁଡ଼ିକ ସବୁଠାରୁ ଚିତ୍ତାକର୍ଷକ । ଦୁଃଖିନୀ ଜନନୀର ଦରଶ ପୁତ୍ର ପରି ସେ ଦେଶ ମାତୃକାର ଅବସ୍ଥା ବର୍ଣ୍ଣନା କରିବାରେ ସିଦ୍ଧହସ୍ତ ଥିଲେ । ଦେଶ ଜନନୀର ଅବସ୍ଥାରେ ତାଙ୍କର ଦରଦୀ ପ୍ରାଣ ଆବେଗଭରା ହୋଇ ଉଠୁଥିଲା ।

ପରାଧୀନ ଭାରତରେ ଶୋଷଣ, ନିଷ୍ପେଷଣ, ଦୁର୍ଭିକ୍ଷ ଅନାଟନରେ ଦେଶବାସୀଙ୍କ ଅବସ୍ଥାର ଚିତ୍ର ପ୍ରଦାନ କରି ମାତୃ ଆଶୀର୍ବାଦ ଭିକ୍ଷା କରିବାକୁ ଯାଇ ସେ ଗାଇଥିଲେ—

ଜୟ ଜୟ ଜୟ ଭାରତ ଜନନୀ ବନ୍ଦଇ ତୋ ପାଦ କମଳେ
କରି,ମା, କରୁଣା ତୋ ହୀନ ସନ୍ତାନେ ନେଶ ଢାଳି ଭୁବି । ବମଳେ

ମଣ୍ଡଳୁଁଣି କେତେ କେତେ କଷଣ
ସହିଲୁଣି କେତେ କେତେ ଦୂଷଣ
ଅନ୍ନ ବସ୍ତ୍ର ବିନା ଆକୁଳିତ ପ୍ରାଣ
ଦୁର୍ଭିକ୍ଷ ରାକ୍ଷସ କବଳେ ।

ମାତୃ ଆଶିଷ ବିନା ଏ ମହାଜାତିର କଷଣ ଦୂର ହୋଇ ପାରିବ ନାହିଁ ବୋଲି କବି ଯେପରି ହୃଦୟଙ୍ଗମ କରିଥିଲେ ସେହିପରି ମାତୃଭୂମିର ସ୍ୱାଧୀନତା ପାଇଁ ଦେଶବାସୀଙ୍କର ତ୍ୟାଗ ଓ ସଂଗ୍ରାମ ଅପରିହାର୍ଯ୍ୟ ବୋଲି ଦର୍ଶାଇ ଏ ଜାତିକୁ ଆହ୍ୱାନ ଦେଇ ଗାଇଥିଲେ—

ଛାଡ଼ି ଦିଅ ଭାଇ ସବୁ ବାବୁ ଗିରି
ଛାଡ଼ି ଆସ ଏବେ ଗୋଲାମ ଚାକିରି
ମୋଟ ଭାତ ଖାଅ ମୋଟ ଲୁଗା ପିନ୍ଧ
ଏକା ଈଶ୍ୱର ଶରଣଂ

× × ×

ମାତା ଦୁଃଖେ ଦୁଃଖୀ ମାତା ସୁଖେ ସୁଖୀ
ମାତର ମରଣେ ମରଣଂ

ଏ ପ୍ରସଙ୍ଗରେ ମାତୃଭୂମିର ଦୁଃଖରେ ସମଦୁଃଖୀ ହୋଇ କବି ଆହୁରି ବହୁ ସମ୍ବେଦନ ମୂଳକ କବିତା ରଚନା କରିଯାଇଛନ୍ତି । ସେଗୁଡିକ ମଧ୍ୟରୁ 'ତେତିଶ କୋଟି ସନ୍ତାନ ମାତା ତମେ ଜନନୀ', 'ଧନ ଜନ ମନ ଶକ୍ତି ଦାୟିନି', 'ଜନନୀ ଜନ୍ମଭୂମି ଜୟତୁ' ସଙ୍ଗୀତ ଗୁଡ଼ିକ ଅତ୍ୟନ୍ତ ମର୍ମସ୍ପର୍ଶୀ ଏବଂ ଉଦ୍‌ବୋଧନ ମୂଳକ । ଭାରତର ପରମ୍ପରା, ଐତିହ୍ୟ ଓ ଅତୀତ ଗୌରବର ସୂଚନା ଦେଇ ସେ ଦେଶବାସୀଙ୍କୁ ଜନନୀର ସୁଖ ଦୁଃଖରେ ସମଭାଗୀ ହେବାପାଇଁ ବ୍ୟାକୁଳ ଆହ୍ୱାନ ଦେଇଛନ୍ତି । ସେ ଗୁଡ଼ିକୁ ପାଠକଲେ ମନେହୁଏ, ସତେ ଯେପରି କବି ଜନନୀର ଦୁଃଖ ଘୁଞ୍ଚାଇବାକୁ ଜନ୍ମ ହୋଇଥିଲେ ।

ଏ ପର୍ଯ୍ୟାୟରେ ଆଉ ଗୋଟିଏ କଥା ନ କହିଲେ କବିଙ୍କର ମାତୃବନ୍ଦନା ପ୍ରସଙ୍ଗ ଅପୂର୍ଣ୍ଣ ବିବେଚିତ ହେବ । ତାହା ହେଲା ତଦାନୀନ୍ତନ ଓଡ଼ିଶାର ଅବସ୍ଥା—

କବି ଭାରତର ଯଶୋଗାନ କରି ଭାରତୀୟ ମାନଙ୍କ ଉଦ୍ଦେଶ୍ୟରେ ଯେପରି କବିତାର୍ଘ୍ୟ ବାଢ଼ିଛନ୍ତି ସେହିପରି ଉତ୍କଳଜନନୀଙ୍କର ଅବସ୍ଥାର ଚିତ୍ର ଦେବାକୁ ଯାଇ ଉତ୍କଳୀୟମାନଙ୍କୁ ମଧ୍ୟ ନାନା ଭାବରେ ଅନୁପ୍ରାଣିତ କରିବାକୁ ବ୍ୟଗ୍ର ହୋଇ ଉଠିଛନ୍ତି । ତାଙ୍କର "କି ହେବ ଏ ମୁଣ୍ଡକଟା ଦେଶକୁ ଦେଖି" କବିତାଟି ଯେପରି ଦରଦଭରା, 'ଉତ୍କଳ ମମ ଜନମ ଦାତ୍ରି ମା ଉତ୍କଳ ମମ ଜନନୀ, କବିତାଟି ସେହିପରି ସମ୍ବେଦନଭରା । ଏହା ବ୍ୟତୀତ ଆହୁରି ଅନେକ ସମ୍ମିଳନୀ ସଙ୍ଗୀତରେ ସେ ଉତ୍କଳର ପୁରପଲ୍ଲୀର ଚିତ୍ର ତଥା ଅତୀତଗୌରବ ଅନନ୍ତରର ବର୍ଣ୍ଣନା ପ୍ରଦାନ କରି ସେ ଉତ୍କଳୀୟ ମାନଙ୍କ ପ୍ରାଣକୁ କରୁଣାର୍ଦ୍ର କରି ଯାଇଛନ୍ତି ।

ସେତେବେଳେ କଟକ, ଭଦ୍ରକ, ବସ୍ତା, କେନ୍ଦୁପାଟଣା ପ୍ରଭୃତି ସ୍ଥାନରେ ଯେଉଁସବୁ ଐତିହାସିକ ସମ୍ମିଳନୀ ଅନୁଷ୍ଠିତ ହେଉଥିଲା, ସେଥି ପାଇଁ ବାଞ୍ଛାନିଧିବାବୁ ପ୍ରାରମ୍ଭିକ ସଙ୍ଗୀତମାନ ରଚନା କରୁଥିଲେ ଏବଂ ନିଜେ ସୁକଣ୍ଠ ଗାୟକ ଥିବାରୁ ସେ ଗୁଡ଼ିକୁ ଗାନ କରି ଶ୍ରୋତାମାନଙ୍କୁ ଉଦ୍‌ବୁଦ୍ଧ କରି ଦେଉଥିଲେ । ତାଙ୍କର 'ଦୁଃଖିନୀ ଉତ୍କଳେ ଶ୍ରୀଜଗତ ଜାହାଣୀ' ଏବଂ 'କେତେଦିନ ଆଉ ଦୁଃଖିନୀ ଜନନୀ' ସଙ୍ଗୀତ ଦୁଇଟିର ସ୍ୱରତରଙ୍ଗ ଏବେ ମଧ୍ୟ ଅନେକଙ୍କ ପ୍ରାଣରେ ଗୁଞ୍ଜରଣ ସୃଷ୍ଟି କରୁଥିବ, ତାଙ୍କର କଣ୍ଠସଙ୍ଗୀତ ଶୁଣିଥିବା ବହୁ ବୟୋବୃଦ୍ଧ ବ୍ୟକ୍ତି ଏ ପର୍ଯ୍ୟନ୍ତ ଜୀବିତ ଅଛନ୍ତି ।

କବିଙ୍କର ପରମ ଅନ୍ତରଙ୍ଗ ବନ୍ଧୁ ଥିଲେ ଜଗଣ୍ଣୀୟ କବି ଗୀର-କିଶୋର ଦାସ । କଟକରେ ପାଳିତ ହୋଇଥିବା ବାଞ୍ଛାନିଧି ବାବୁଙ୍କ ଶ୍ରାଦ୍ଧ ଦିବସରେ ସଭାପତିତ୍ୱ କରି ଥରେ ଗୀରବାବୁ କହିଥିଲେ, ବାଞ୍ଛାନିଧି ବାବୁ ଓ ତାଙ୍କ ମଧ୍ୟରେ କବିତାରେ ପତ୍ରାଳାପ ହେଉଥିଲା । ଏହା ପରି କେତେ କଥା । ଯେଉଁମାନେ ତାଙ୍କ ସଂସ୍ପର୍ଶରେ ଆସିଛନ୍ତି, ସେମାନେ ତାଙ୍କୁ ଭୁଲି ନଥିବେ ନିଶ୍ଚୟ ।

ମହାତ୍ମାଗାନ୍ଧି ଓ ଉତ୍କଳମଣି ଗୋପବନ୍ଧୁଙ୍କ ରଚନାତ୍ମକ କର୍ମ ପ୍ରବାହକୁ ବାଞ୍ଛାନିଧି ବାବୁ ସଂଗୀତ ମାଧ୍ୟମରେ ଉତ୍କଳର ପୁରପଲ୍ଲୀରେ ତରଙ୍ଗା-ୟିତ କରି ଦେଉଥିଲେ । ନିଷ୍ପେଷିତ ଜନତା ମନ୍ତ୍ରମୁଗ୍ଧ ହେଲାପରି ଉନ୍ମତ୍ତ ହୋଇ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଉଥିଲେ । ଜନ୍ମ-ଭୂମିର ଦୁଃଖରେ ବ୍ୟଥିତ ହୋଇ କବି ଦରଦୀ କଣ୍ଠରେ ଏ ଜାତିକୁ ଯେଉଁ

ଆହ୍ୱାନ ଦେଇ ଯାଇଛନ୍ତି ତାହା ଯେପରି ହୃଦୟସ୍ପର୍ଶୀ, ସେହିପରି ଜାଗରଣ ମୂଳକ । ଗଣଜୀବନରେ ଜାତୀୟତା ବୋଧର ଉତ୍ସ ଖେଳାଇ-ବାକୁ ଯାଇ ସେ ସଙ୍ଗୀତର ତାଳେ ତାଳେ ମାତୃପୂଜାର ଶୁଭ ଅର୍ଘ୍ୟ ବାଢ଼ି ଯାଇଛନ୍ତି ।

କବିଙ୍କର ମୃତ୍ୟୁ ପରେ ମାତୃପୂଜାର ଆବାହନୀ ସ୍ୱର ଝଙ୍କାର ବନ୍ଦ ହୋଇ ଯାଇଛି କହିଲେ ଅତ୍ୟୁକ୍ତି ହେବନାହିଁ । ସେ ଅଧିକ କାଳ ବଞ୍ଚିଥିଲେ କଳା ମଞ୍ଜୁଳ ଉତ୍କଳର ସାରସ୍ୱତ-ଭଣ୍ଡାର ଆହୁରି ମନୋଜ୍ଞ ସଙ୍ଗୀତ ସମ୍ଭାରରେ ଝଲସି ଉଠିଥାଆନ୍ତା । ଯେଉଁ ବ୍ୟକ୍ତି ଆଜୀବନ ଜନ୍ମଭୂମି ଦୁଃଖରେ ଦୁଃଖୀ ହୋଇ କବିତା ରଚନା କରି ଗଣ ଜୀବନରେ ଜାତୀୟ ଚେତନା ଜାଗ୍ରତ କରିଦେଇ ଗଲେ, ସେ ଯେ ଯଥାର୍ଥରେ ମାତୃଭକ୍ତ ଜାତୀୟ କବି, ଏହା ସମସ୍ତେ ସ୍ୱୀକାର କରିବେ ନିଶ୍ଚୟ ।

———

# ପ୍ରକୃତି କବି ବୀରକିଶୋର

● ଗଙ୍ଗାଧର ବେହେରା

ଓଡ଼ିଆ ସାହିତ୍ୟର ସୁଯୋଗ୍ୟତମ ସନ୍ତାନ ହିସାବରେ କବି ବୀରକିଶୋର ପୁର ପଲ୍ଲୀରେ ପରିଚିତ ।। ତାଙ୍କର ଶିଶୁ କବିତା ଲେଖା ଠାରୁ ଆରମ୍ଭ କରି ବୈପ୍ଳବିକ ଲେଖା ପର୍ଯ୍ୟନ୍ତ ସବୁ ଗୁଡ଼ିକ ଲୋକ ମୁଖରେ ଅବାରିତ କଣ୍ଠରେ ବନ୍ଦନୀୟ । ତାଙ୍କର ଶିଶୁ ସାହିତ୍ୟ ପ୍ରତି ଏତେ ଅନୁରକ୍ତ ହିବଲେ ଆଶ୍ଚର୍ଯ୍ୟ ଲାଗେ । ତା ସହିତ ବୈପ୍ଳବିକ ତଥା ଦେଶ ମାତୃକାକୁ ବିଦେଶୀ ଶାସନ କବଳରୁ ମୁକ୍ତ କରିବା ନିମନ୍ତେ ଉଦ୍‌ବୋଧନ କବିତା ଗୁଡ଼ିକ ଅତ୍ୟନ୍ତ ମର୍ମସ୍ପର୍ଶୀ ରୋମାଞ୍ଚକର ।। ହେଲେ ଏ ସବୁ ଦିଗରେ ସାହିତ୍ୟ କ୍ଷେତ୍ରରେ କବିଙ୍କର ଯଥେଷ୍ଟ ପଦ ମର୍ଯ୍ୟାଦା ରହିଛି ମାତ୍ର ଯେ ପ୍ରକୃତି ସେବାରେ ଅବହେଳା କରିଛନ୍ତି ତା ନୁହେଁ ।। ତାଙ୍କର କବିତା ଗୁଡ଼ିକରେ ପ୍ରକୃତି ଏପରିଭାବେ ମୂର୍ତ୍ତିମନ୍ତ ହୋଇଛି ଯେ ପାଠକଲେ ପାଠକକୁ ଆଶ୍ଚର୍ଯ୍ୟ ହେବାକୁ ପଡ଼ିବ । ସେ ଦୃଷ୍ଟିରୁ ତାଙ୍କୁ ବିପ୍ଳବୀକବି କହିଲେ ମଧ୍ୟ ପ୍ରକୃତି କବି ପଦଧାରୀ ହେବାର ଯଥେଷ୍ଟ ସାମଗ୍ରୀ ରହିଛି । ନିମ୍ନରେ ଆମ୍ଭର ଆଲୋଚ୍ୟ ।।

ପାଶ୍ଚାତ୍ୟ କବି T.S. Eliot Words Worth, P. B. Shelly ଭଳି କବିଙ୍କ ଜୀବନ ଯାହାର ଅପୂମାରମ୍ଭରୁ ସେ ପ୍ରକୃତି ଠାରୁ ଆହ୍ୱାନ ପାଆନ୍ତି ।। ପ୍ରକୃତି ସହିତ ନିଜକୁ ମିଶାଇ ଦେବାରେ ସେ ଯଥେଷ୍ଟ ଆନନ୍ଦ ପାଆନ୍ତି ।" ତାଙ୍କୁ ଯେତେବେଳେ ୨୪ବର୍ଷ ତାଙ୍କର ମାତା ଦେହତ୍ୟାଗ କରନ୍ତି । ତାଙ୍କର ପିତା ଯଦିଓ ଦ୍ୱିତୀୟ ବିଭା କରନ୍ତି ତଥାପି ତାଙ୍କର ଅବୁଝା ମନ ବୁଝେ ନାହିଁ । ପ୍ରକୃତି ମା ଙ୍କର ସନ୍ଧାନରେ ସେ ଲାଗନ୍ତି । ଶେଷରେ କରୁଣାମୟୀ ଉଦାର ହୃଦୟା ଧାତ୍ରୀ, ଜନ୍ମଦାତ୍ରୀ ଅନ୍ନଦାତ୍ରୀ ହିସାବରେ ଅନ୍ୟ ଏକ ମାତାଙ୍କର ସନ୍ଧାନ ପାଆନ୍ତି । ସେ ସେହି ପ୍ରକୃତିରାଣୀ ତଥା କବିଙ୍କର କରୁଣାମୟୀ ମା । ପ୍ରକୃତି କୋଳରେ ଆଶ୍ରୟ ନେଇ ତାଙ୍କଠାରୁ ସ୍ନେହ ଶ୍ରଦ୍ଧା ପାଇ ବଞ୍ଚି ରହିବା କବିଙ୍କର ଲକ୍ଷ୍ୟ ହୁଏ । ପ୍ରକୃତି

ଠାରେ ନୂତନରୁ ନୂତନ ବିଚିତ୍ରରୁ ବିଚିତ୍ରର ଚିତ୍ର ଦେଖି ପ୍ରକୃତିକୁ ଚିତ୍ରଣ କରି ବସନ୍ତି ।

କବିଙ୍କ ଜନ୍ମପୀଠ ସେହି ଅଳକା ନଈକୂଳର ପୁନଙ୍ଗ ଗ୍ରାମର ସହକାର ବନ । କାଜ କୋଇଲିର ସ୍ୱନ, ପୁଷ୍ପ ବାଟିକା, ପଶୁପକ୍ଷୀ, କୀଟ ପତଙ୍ଗ ମାନଙ୍କର ପ୍ରମୋଦ ନାଟିକା, ପ୍ରଶାନ୍ତ ପ୍ରଦୋଷର ଅଫୁରନ୍ତ ସ୍ୱର୍ଗୀୟ ଶୋଭାବଳୀ କବିଙ୍କୁ ଆମୋଦିତ କରେ । ସେ ନିଜକୁ ଭୁଲି ଯାଆନ୍ତି । ସେହି ପ୍ରିୟତମ ଅଳକା କୂଳରେ ଏକାନ୍ତ ଭାବେ ନିର୍ଜନ ସମୟ କଟାନ୍ତି । କୋଇଲି, ବଣି, କଜଳପାତିଙ୍କ ସହିତ ବାର୍ତ୍ତାଳାପ କରି ବୃକ୍ଷଲତାଙ୍କ ସହିତ ବନ୍ଧୁତା ବାନ୍ଧି ଘରକୁ ଫେରନ୍ତି । ଏହିଠାରେ ଲକ୍ଷ୍ୟ କରିବା କଥା କବିଙ୍କୁ ସେତେବେଳେ ମାତ୍ର ୭ । ୮ ବର୍ଷ ।

ତାଙ୍କର ପାଠପଢ଼ା ଆରମ୍ଭ ହୁଏ ଗାଁ ଗୁରୁଶାଳୀରେ । ଗୁରୁଶାଳୀ ପାଠ ଶେଷକରି କଟକ ପ୍ୟାରୀମୋହନ ଏକାଡେମୀରେ ପଢ଼ନ୍ତି । କଟକ ପ୍ୟାରୀମୋହନ ଏକାଡେମୀରେ ଛାତ୍ର ଥିଲାବେଳେ ଉତ୍କଳକବି ମଧୁ ରାଓ ଥାନ୍ତି ସେ ସ୍କୁଲର ସେକ୍ରେଟାରୀ । ୰ମଧୁ ରାଓ ସେତେବେଳେ କବିଙ୍କୁ ପ୍ରଶ୍ନ କରନ୍ତି "ତାଙ୍କୁ କି ରଙ୍ଗ ଭଲଲାଗେ ।" କବି ହସି ହସି କହନ୍ତି ସବୁଜ ପଡ଼ିଆର ରଙ୍ଗ ତାଙ୍କୁ ଅତ୍ୟନ୍ତ ଭଲଲାଗେ ।' ଥରେ ୰ଉତ୍କଳକବି ଡାଫୋଡ଼ିଲ କଥା ପଢ଼ାଉ ପଢ଼ାଉ କହନ୍ତି, ଡାଫୋଡ଼ିଲ ଟି ଆମ ଭାରତର କେଉଁ ପୁଷ୍ପ ସହିତ ତୁଳନୀୟ ॥ କବି ବୀରକିଶୋର କହନ୍ତି କାଠଯୋଡ଼ି କୂଳର ଅଗସ୍ତିଫୁଲ ସହିତ ଡାଫୋଡିଲ ତୁଳନୀୟ । ଏହିଠାରେ ବିଚାର କରିବା କଥା କାଠଯୋଡ଼ି କୂଳର କେଉଁ ଅନାମ-ଧେୟ ଅଗସ୍ତିଫୁଲ ଯାହାକୁ ଚିହ୍ନନ୍ତି କମ୍ ଲୋକ, ସେ ମନ୍ଦିରକୁ ଆସେ ନାହିଁ ଅନ୍ୟାନ୍ୟ ପୁଷ୍ପଭଳି ବିଶେଷ ଆଦର ପାଏ ନାହିଁ ॥ ତଥାପି ସେ ଭାରତୀୟ ଡାଫୋଡ଼ିଲ । ତାର କାନ୍ତି ତାର ଶରୀରର ଗଠନ କବିଙ୍କୁ ଡାଫୋଡ଼ିଲର ଛବି ଆଣେ । ସବୁଜ ପଡ଼ିଆର ରଙ୍ଗ କବିଙ୍କୁ ଏତେ ଆମୋଦିତ କରେ ଯେ, ଦୁନିଆର ସବୁ ରଙ୍ଗକୁ ସେ ଭୁଲି ଯାଆନ୍ତି ॥ ଦେଖନ୍ତି ସେହି ସବୁଜ ପଡ଼ିଆର ରଙ୍ଗ ସହିତ ବିଶ୍ୱର ସାଗର, ଭୂଧର ଆକାଶର କାନ୍ତି ଏକାନ୍ତ ଭାବେ ସାମଞ୍ଜସ୍ୟ । ତେଣୁ ସ୍ୱାଭାବିକ ଭାବୁକଙ୍କୁ ସବୁଜ ରଙ୍ଗର ମହତ୍ତ୍ୱ ଯଥେଷ୍ଟ ।

ତାଙ୍କର କବିତା ଲେଖାହୁଏ ଖୁବ୍ ବାଲ୍ୟବୟସରୁ । ପ୍ରାୟ ୧୦।୧୨ ବର୍ଷ ଯେତେବେଳେ ତାଙ୍କୁ । ତାଙ୍କର ପ୍ରଥମ କବିତା ହୁଏ, ସେ କେଉଁ ଅନାମଧେୟ ନରମ ସକାଳର ଶିଶିର ବିନ୍ଦୁ ଉଦ୍ଦେଶ୍ୟରେ । କବି ଗାଆନ୍ତି—

କେଉଁ ଦୂରଦେଶ ବାଟୋଇ ଭଳିରେ
କେଣେ ଯିବୁ ସତେ କହ
ରାତିର ପାହୁଛି ତରବର କିଆଁ
ସାଥୀ ହୋଇ ଯିବା ରହ—

ଉକ୍ତ ପଦଟିକୁ ଆଲୋଚନା କଲେ ଜଣାଯାଏ । ସାହିତ୍ୟ ସାଧନର ପ୍ରାରମ୍ଭରୁ କବିଙ୍କର ପ୍ରକୃତି ଚିତ୍ରଣରେ ନିଖୁଣ ଶିଳ୍ପୀ ହସ୍ତ ଥିଲା । ପ୍ରକୃତି ସମ୍ବନ୍ଧ ଦର୍ଶନ ଏପରି ଭାବେ ଜଡ଼ିତ ଭାବିଲେ ପାଠକଙ୍କୁ ବିସ୍ମିତ ହେବାକୁ ପଡ଼େ ।

ଜୀବନର ସ୍ରୋତ କାଳର ନଦୀରେ ବହିଗଲେ । କବି ସାହିତ୍ୟକୁ ଏକାଧାରରେ ନିଜର ସର୍ବସ୍ୱ ବୋଲି ଭାବନ୍ତି ।। କବି ଯେତେବେଳେ କଟକରେ ରହନ୍ତି ସେତେବେଳେ ପ୍ରତ୍ୟେକ କାଠଯୋଡ଼ି କୂଳକୁ ଯାଇ ତାର ପ୍ରଶାନ୍ତ ବକ୍ଷର ବାଲୁକା ରାଶିକୁ ଦେଖି ଉନମାଦନରେ ମାତି ଉଠନ୍ତି । ସେହିଠାରେ ବି ଧାଡ଼ି କବିତା ଲେଖିବାର ଅଭ୍ୟାସ ମଧ୍ୟ ତାଙ୍କର ରହିଥିଲା । ବୟସ ବଢ଼ିଗଲାବା ସଙ୍ଗେ ଲେଖାର ଭାବଭଙ୍ଗୀ ବଢ଼ିଗଲେ । ପ୍ରକୃତି ବକ୍ଷକୁ ବର୍ଷାଋତୁ ଆସେ । ନୂଆ ବର୍ଷା । ବର୍ଷାର ମନରେ ଯେତିକି ଅପରାହ୍ନ ବର୍ଷା କବିଙ୍କ ମନରେ ମଧ୍ୟ ସେତିକି ଅସରନ୍ତି ଭାବନା ।। ଯେପରି ମେଘଦୂତର ପ୍ରଣେତା କାଳିଦାସ ଆଷାଢ଼ସ୍ୟ ପ୍ରଥମ ଦିବସରେ ବର୍ଷାକୁ ଦେଖି ଯେତିକି ପାଗଳ ନ ହୁଅନ୍ତି କବି ନୂଆ ମେଘ ଖଣ୍ଡିଏ ଦେଖି ଅତ୍ୟଧିକ ମାତ୍ରାରେ ଆତ୍ମହରା ହୋଇ ଉଠନ୍ତି । ଧାଇଁ ଯାଇ ନେଇ ବର୍ଷା ପାଣିରେ ତିନ୍ତି ଆସନ୍ତି । ବର୍ଷାର ସେଇ ଝରଝର ଝରଧାର ଏତିକ ଝରବ ଭାବେ ଶୁଣି ଯାଆନ୍ତି । ଭାବନ୍ତି ସତେ ସେହି ବର୍ଷାର ସ୍ୱରକୁ ବାନ୍ଧି ରଖନ୍ତେ ।। ଅତି ଉତ୍କଣ୍ଠାର ସହିତ ଲେଖି ବସନ୍ତି—

"ଝୁମ୍ ଝୁମ୍ ଶୁଭେ କାର ଝୁମୁକ କଠାଉ
ଦୁମ୍ ଦୁମ୍ ନାଚେ କିଏ ହୋଇ ଦାଉ ଦାଉ

ଧଗ୍ର ଦେଖା ଘରେ କଥାଁ ମାରନ୍ତି ପିଠାଉ
ଗ୍ଲୁରଆଡେ ବର୍ଷାଦୁଏ କା' ଶୁଭ ଚଡାଉ''

ବର୍ଷା ଆସିଛି । ସେ ବର୍ଷାକୁ ଦେଖି ବର୍ଷାଠାରେ ଜୀବନ ଆରୋପ କରନ୍ତି । ବର୍ଷା ପାଣିର ଝର ଝର ସ୍ୱରକୁ ଝୁମୁ ଝୁମୁ ସଙ୍ଗୀତ କଳ୍ପନା କରନ୍ତି, ଘଡ଼ଘଡ଼ ଚଡ଼ଚଡ଼ ଶବ୍ଦକୁ କୌଣସି ଏକ ନାଟକାର ଦୁମୁଦୁମୁ ଶବ୍ଦ ସଙ୍ଗୀତ ତୁଳନା କରନ୍ତି ॥ ପୁଣି କହନ୍ତି ବର୍ଷା କଣ ସତେ ଆସିଛି, ନା ତା ନୁହେଁ, ଧଗ୍ରଦେଖାଙ୍କ ଘରେ କୌଣସି ଉତ୍ସବ ନିମନ୍ତେ ବର୍ଷାପାଣି ଗୁଡ଼ାକ ପିଠାଉ ହୋଇ ଧଗ୍ରରେ ସିଞ୍ଚା ଯାଉଛି । ବାସ୍ତବିକ୍ ବର୍ଷାକୁ ଏଭଳି ରୂପରେ ବର୍ଣ୍ଣନା କରିବା ସେହି ମନୋଜ୍ଞ କବିଙ୍କ ପକ୍ଷେ ହିଁ କେବଳ ସମ୍ଭବ ।

ବର୍ଷାଦିନ ମାନଙ୍କରେ ଜହ୍ନିଫୁଲଗୁଡ଼ିକ ସନ୍ଧ୍ୟାରେ ଫୁଟନ୍ତି । ଏହା ନିତାନ୍ତ ସତ୍ୟ । ମାତ୍ର କବି ତାକୁ ତର୍କଣା କରି ଭିନ୍ନ ରୂପ ଦିଅନ୍ତି ॥ ଠାପୋଇ ଝିଅମାନେ ସାଧାରଣତଃ ଦିନସାକ ଶୋଇ ଶୋଇ ସନ୍ଧ୍ୟାକୁ ଉଠନ୍ତି । ସେମାନେ ଅଳସେଇ । ସେହି ଠାପୋଇ ଝିଅମାନଙ୍କ ସଙ୍ଗୀତ ତୁଳନା କରି କବି ଅମର ଲେଖନୀରେ ଲେଖି ବସନ୍ତି—

''ଜହ୍ନୀ ଫୁଲ ବାଳୀ ଅଟେ ନିହାତି ଠାପୋଇ
ବେଳ ବୁଡ଼ଟାରେ ଉଠେ ଦିନ ସାଗ୍ର ଶୋଇ''

କବି ଏଠାରେ ବିତର୍କ କରି କହନ୍ତି ବର୍ଷାଦିନର ସମସ୍ତ ଦୁନିଆଁ ଯେତେବେଳେ ଅମୃତ ପାନରେ ଆମୋଦିତ, ସେତେବେଳେ ଜହ୍ନୀଫୁଲ ଶୁପ୍ତା ॥ ତେଣୁ ସେ ଠାପୋଇ ଝିଅ ନୁହେଁ ଆଉ କ'ଣ ? ତାଙ୍କର ''ବର୍ଷା'' କବିତାଟିକୁ ପାଠକଲେ ପାଠକ ଘରେ ବସି ସତେ ଯେପରି ଅଦିନରେ ବର୍ଷାକୁ ଉପଭୋଗ କରୁଛି ।

କବିଙ୍କର ''ବସନ୍ତ କବି'' କବିତାଟି ଏକାନ୍ତ ଭାବେ ପ୍ରାଣସ୍ପର୍ଶୀ ହୋଇଛି । ରାତିର ଉଦ୍‌ଯାପନ ନିମନ୍ତେ ଶଯ୍ୟାରେ ନିଦ୍ରିଷ୍ଟ ଥା'ନ୍ତି କବି ॥ ରାତି ପାହି କରି ପାହି ନାହିଁ ॥ ଉଷା ଅାସିକରି ଆସିନାହିଁ । ଏତିକିବେଳେ ବସନ୍ତ କବି ନାମରେ ତାଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁ , ସହକାର

ଗନ୍ଧରେ କୁହୁ କୁହୁ କରି ସ୍ୱାଗତ କରୁଛି ବନ୍ଧୁଙ୍କୁ । କବି ଚମକିତ ହୋଇ ଶଯ୍ୟା ତ୍ୟାଗ କରନ୍ତି । ଧାଇଁ ଯାଆନ୍ତି ବାହାର ଅଗଣାର ସେହି ଗହଳିଆ ଅନ୍ଧକାର ବଣଆଡ଼େ ॥ ସହଜେ ବସନ୍ତ କାଳ । ବସନ୍ତର ମୋହମୟ ଗନ୍ଧ କବିଙ୍କୁ ପୁଲକିତ କରୁଛି । ଏତିକିବେଳେ କବି ଆବିଷ୍କାର କରନ୍ତି ପୂର୍ବର ଦୈନନ୍ଦିନର ବନ୍ଧୁ ସେହି କୋଇଲି ॥ ଅବିସ୍ମରଣୀୟ ସେ ବନ୍ଧୁ ଏବଂ ତାହାର ମଧୁର ଡାକ ॥ କବିଙ୍କ ଲେଖନୀରେ—

"କି ଶୁଭ ଯୋଗରେ ଗାଇଲୁ ଗାୟକ
ଭାଙ୍ଗିଗଲା ମୋର ଭ୍ରମ
ମୋ ନବ ବସନ୍ତ ଗାଇତ ନଥିଲା
ବନ୍ଧୁ ଜଣେ ତୋହ ସମ ॥

ତେଣୁ କବି ସ୍ୱାଭାବିକ ପ୍ରକୃତି ପୂଜକ ॥

ତାଙ୍କର 'ଅଗ୍ନିଉତ୍ସବ' କବିତାରେ ପ୍ରକୃତିକୁ ନିବିଡ଼ ଭାବେ ତାଙ୍କ ଅମର ଲେଖନୀରେ ଚିତ୍ରଣ କରନ୍ତି । "ଅଗ୍ନିଉତ୍ସବ" ଧରାରେ ପାଳିତ ହେବ ॥ ଓଡ଼ିଆ ସଂସ୍କୃତିର ପ୍ରତୀକ । ଉଦ୍ଦିଷ୍ଟ ଦିନ ଆସି ଉପସ୍ଥିତ । ସହଜେ ପୁନେଇ ରାତି ॥ ଶୁଭ୍ର ଚନ୍ଦ୍ରାଲୋକରେ ପୁନେଇ ରାତି ଧୌତ ॥ ଜ୍ୟୋତ୍ସ୍ନା ସହିତ ତାଳ ଦେଇ ନକ୍ଷତ୍ରମାନେ ଆକାଶରେ ଫୁଟି ଉଠନ୍ତି ॥ ରାତିର ନିସ୍ତବ୍ଧତାକୁ ଛିନ୍ନ କରି ଚକ୍ରବାକ୍ ଚକ୍ରବାକୀ ନିଶ୍ଚୟ ଉଡ଼ି ଯାଉଥିବେ ॥ ସେମାନେ ଯେ ଖାଲି ଉଡ଼ି ଯାଉଥିବେ ତା ନୁହେଁ, ଅମୃତମୟ ଜ୍ୟୋତ୍ସ୍ନାକୁ ପିଉଥିବେ ନିଶ୍ଚୟ । ଆଜି ପୁନେଇଁ ହୋଇ-ଥିବାରୁ ରାତିଯାକ ଚନ୍ଦ୍ରାଲୋକ ରହିବ ॥ ସେଥିଲାଗି ପୁଷ୍କରିଣୀରେ କୁମୁଦମାନେ ଆଜି ମନ୍ଦେ ହସିବ ॥ କାରଣ ଚନ୍ଦ୍ର କିରଣ କଇଁର ଏକାନ୍ତ ସର୍ବସ୍ୱ—ପ୍ରାଚୀନ ସାହିତ୍ୟ ଅନୁସାରେ ॥ ମାତ୍ର ବର୍ତ୍ତମାନର ବିଜ୍ଞାନ ପଦ୍ଧତି ଅନୁସାରେ ତାହା ଅନୁରୂପ ॥ ତେଣୁ କବିଙ୍କ ଭାଷାରେ—

"ଫୁଟିପଡ଼େ ଜ୍ୟୋତ୍ସ୍ନାଫୁଲ ତୋଳି ଉଠେ ଧରା
ହସୁଛନ୍ତି ଲକ୍ଷ ତାରା ହୋଇ ଆତ୍ମହରା
ସୁନୀଳ ଗଗନ ତଳେ
ଚକ୍ରବାକ ଦଳେ ଦଳେ

ଜଡ ଜଡ଼ ପିଉଛନ୍ତି ନବଜ୍ୟୋତି ଝରା
କୁମୁଦମା ଘରେ ଅଜି ମହୋତ୍ସବ ପରା ॥

ଏଠାରେ କବିଙ୍କର କଳ୍ପନା ନର୍ଦ୍ଦର ପ୍ରାଚୀନ ସାହିତ୍ୟ ତଥା ଗୀତ ସାହିତ୍ୟର ସୀମା ଲଂଘନ କରି ମଧୁମୟ ହୋଇ ଉଠିଛି ॥

ଅନ୍ୟତ୍ର ଏହି 'ଅଗ୍ନି ଉତ୍ସବ' କବିତାରେ କବି ଅନ୍ୟ ଏକ ପ୍ରକୃତି ବର୍ଣ୍ଣନାମୂଳକ ପଦ ଲେଖିଛନ୍ତି । ଅଗ୍ନି ଉତ୍ସବ ଚାଲିଯାଇଛି । ଉତ୍ସବ ସହିତ ଶୀତ ମଧ୍ୟ ଚାଲିଯାଉଛି । ଋତୁରାଜ ବସନ୍ତ ଆସିବା କଥା ଶୁଣାଯାଉଛି । ଧୀରେ ମଳୟ ସମୟେ ସମୟେ ଉଡ଼ରୁ ଭାବେ ଆସିଯାଉଛି । କେତକୀଫୁଲ ଫୁଟିଗଲଣି । ଶୀତର ପ୍ରକୋପରେ କଅଁଳିଆ ପତ୍ର ସବୁ ଶୁଷ୍କ ହୋଇ ଯାଇଛନ୍ତି । ବସନ୍ତ ଋତୁ ଆସନ୍ତେଲ ବୃକ୍ଷଲତାମାନେ ପଲ୍ଲବ ଉଠିବେ । ବନ ଉପବନରେ ନୈସର୍ଗିକ ଶୋଭାର ସମ୍ଭାର ଉଚ୍ଛୁଳି ପଡ଼ିବ । ଏହି ସମୟରେ ଋତୁରାଜ ବସନ୍ତଙ୍କର ଅଭିଷେକ ହେବ । ସେଇଥିଲାଗି କୋଇଲି ପରା ଆରମ୍ଭ କଲଣି ତାର କୁହୁ କୁହୁ ସ୍ୱନ—

ଯଥା—

"ସୁବାସେ ଉଚ୍ଛୁଳି ପଡ଼େ କେତକୀ ପସରା
ପଲ୍ଲବ ପତାକାମାଳ ବନଯାକ ମରା
ମଳୟ ଉଡ଼ରୁ ଆସି
ଚହଟାଉ ଦେଉଛି ହସି
ଏବେ କେବେ ଋତୁରାଜ ଅଭିଷେକ ପରା
କାଲଠୁ ଗଲଣି ଦେଇ କୋଇଲି ନାଗରା"

ଏକ ଅବିସ୍ମରଣୀୟ ସନ୍ଧ୍ୟାର ଶୋଭାକୁ ବର୍ଣ୍ଣନା କରିବାକୁ ଯାଇ କବି ତାଙ୍କ "ଲଜ୍ଜାଫୁଲ" କବିତାରେ ଲେଖିଛନ୍ତି—ସଂଧ୍ୟା ହୋଇ ଆସିଲଣି, ଦିନମଣି ତାଙ୍କ ! ଅସ୍ତାଚଳରେ ଆଶ୍ରୟ ନେଲେଣି, ତାଙ୍କର ବିଦାୟ ଦେଖି ପଦ୍ମଫୁଲ ମଳିନ ହେଲଣି । ଏହା ବିଜ୍ଞାନ ସମ୍ମତ ସତ୍ୟ । ସୂର୍ଯ୍ୟାଲୋକ ବ୍ୟତିରେକ ପଦ୍ମର ଅସ୍ତିତ୍ୱ ନାହିଁ କି ତାର ନାଗର ନାହିଁ । ପୂନଶ୍ଚ ସନ୍ଧ୍ୟାହେଲେ ପଦ୍ମ ମଳୀନ ହେବା

ସ୍ୱାଭାବିକ୍ । ପଦ୍ମର ମଳିନତା ଯୋଗୁ ପୁଷ୍କରିଣୀର ଶୋଭା ମଧ୍ୟ ମଳିନ ହୁଏ । ଗ୍ରହଗ୍ରହ ନକ୍ଷତ୍ରମଣ୍ଡଳକୁ ଆସିନଥାନ୍ତି । ନୀଳ ନୀଳ ବଉଦମାଳ ଆକାଶରେ ଖଣ୍ଡିଏ ଖଣ୍ଡିଏ ଭାସି ବୁଲିବା ସଙ୍ଗେ ସଙ୍ଗେ, ସନ୍ଧ୍ୟା ଯେତେ ଗାଢ଼ତର ହେଉଛି ଚକୋର ଚକୋରୀଙ୍କର ଦୁଃଖ ବଢ଼ୁଛି । କାରଣ ରାତିରେ ତାଙ୍କର ବିଚ୍ଛେଦ ଘଟେ । ସେହି ଦୃଶ୍ୟଟିକୁ କବି ଏପରି ରୂପ ଦିଅନ୍ତି—

"ସୂର୍ଯ୍ୟ ପାଖରୁ ନେଇ ମେଲାଣି
ସରୋଜ ଯାଉଛି ଓଢ଼ଣା ଟାଣି
କଳାକାଠ ଦିଶେ ସରସୀ ରାଣୀ
ଆପଣାଙ୍କ ଗ୍ରହଗ୍ରହ
ନୀଳ ମେଘ ଗୁଚ୍ଛ ଯାଉଛି ମିଳାଇ
ଶୁଭୁଛି ଚକୋର କାନ୍ଦ ॥

ପଦ୍ମ ଗୋଟିଏ ଝିଅ । ସେହି ସନ୍ଧ୍ୟାର ଆଗମନ ଲାଗି ପଦ୍ମ ସହିତ ଚକୋରର ଦୁଃଖ ମାତ୍ରାଧିକ ହେଉଛି । ଅନ୍ୟ ଏକ ବାଳୀ କୁମୁଦ । ସେ ତେଣେ ଜଳର ଶ୍ୟାମଳ ଶଯ୍ୟାରେ ଆସୀନ ହୋଇ ତଥା ନିଜର ଗନ୍ଧ ବିତରଣ କରି ବସିଛି ଜାଗରି ଜାଳି ତାର ପ୍ରେମିକ ସରଗ ଦେଶ ରାଜକୁମାର ଚନ୍ଦ୍ରଙ୍କ ଉଦ୍ଦେଶ୍ୟରେ । ଚନ୍ଦ୍ର କର୍ତ୍ତୃକ ଆନୀତ ଜ୍ୟୋତ୍ସ୍ନା ରୂପକ ହାରକୁ ପିନ୍ଧି କୁମୁଦ ଓ ଚନ୍ଦ୍ର ଅଭିସାର ରଚନା କରିବେ ଧରାରେ । କବିଙ୍କ ଭାଷରେ—

ଶ୍ୟାମଳ ଶେଯରେ କୁମୁଦ ବାଳୀ
ହାତେ ଧରି ବାସ ଚନ୍ଦନ ଥାଳୀ
ଆସିବେ ବୋଲି ତା ଜୀବନ ମାଳୀ
ବସିଛି ପୂରୁବେ ରହିଁ
ଆଶା ଅଛି ତାର ପିନ୍ଧି ଜ୍ୟୋତ୍ସ୍ନାହାର
ସଂସାର କରିବା ପାଇଁ ॥

ତାଙ୍କର ସମସ୍ତ ବାଲ୍ୟ କବିତାଗୁଡ଼ିକ ପାଠ କଲେ ଜଣାଯାଏ କବିଙ୍କର ଚିନ୍ତାଧାରା ବାସ୍ତବରେ ସେବା ପ୍ରକୃତ ସେବାରେ ନିୟୋଜିତ ହୋଇଥିଲା । ତାଙ୍କର ସେହି କବିତାଗୁଡ଼ିକ ଯଦି ଏକାଧାରରେ ଗତି କରିଥାନ୍ତା, ତାହେଲେ ସେ ଆଜି ଦ୍ୱିତୀୟ ଓ୍ୱାର୍ଡସଓ୍ୱାର୍ଥ ହୋଇଥାନ୍ତେ । କିନ୍ତୁ ତାଙ୍କର ଲେଖାର ଗତି ଜାତୀୟ ଯୁଦ୍ଧର ସ୍ରୋତରେ ଭିନ୍ନରୂପ ଧାରଣ କଲା । ସେ ଆଜି ଜାତୀୟ କବି । ମାତ୍ର ନିଶ୍ଚିନ୍ତଭାବେ ଓଡ଼ିଆ ସାହିତ୍ୟ ତାଙ୍କୁ ପ୍ରକୃତ କବିର ଯୋଗ୍ୟ ପୂଜା ଅର୍ଘ୍ୟ ଦେବ ।

---



---

# ପ୍ରାର୍ଥନା

ଶ୍ରୀ ଶ୍ୟାମ ତ୍ରିପାଠୀ

ରାଗ-ରସ କୋଇଲା । (ବିଭୂଷଣ ପୁଷ୍ପେ ଯା' କାନ୍ତ ଜାଣ·ବୃତ୍ତେ)

୧

ବନ୍ଧୁ ପ୍ରିୟ ଭାଇ ବୀର କିଶୋର
ଜୟନ୍ତୀରେ ଘେନ ଶ୍ରଦ୍ଧା ମୋହର
କି ଦେଇ ତୁମ୍ଭର ତୋଷିବୁ ମନ
ଡ଼ାଳି ଦେଉ ଏ କବିତା ସୁମନ ହେ
ଗ୍ରହଣେ ମନରେ ଶାନ୍ତି—ହେ,
ଆସିବ ଆମ୍ଭର ଉଲ୍ଲସିତ ଭାବେ
ହେ, ସଂବର୍ଦ୍ଧିତ ଅତିଥି ହେ ॥୧॥

୨

ଭାରତ ସ୍ୱାଧୀନ ସଂଗ୍ରାମ ବେଳେ
ତୁମ୍ଭ ତ୍ୟାଗ କହିବାକୁ ନସରେ
ଭଗ୍ନ ସ୍ୱାସ୍ଥ୍ୟ କଥା ମନେ ନଭାବି
ରଣାନଳେ ଝାସ ଦେଲଟି କବି ହେ
ନିଷ୍ଠୁର ବ୍ରିଟିଶ କାରାରେ—
ରହି ସଂଗଠିଲ କର୍ମୀ ବୃନ୍ଦ, ତୁମେ
ସସ୍ନେହ ମୃଦୁ ବାକ୍ୟରେ ହେ ॥୨॥

୩

ତୁମର ରଚିତ ସଂଗୀତ ଛନ୍ଦ
ଦିଏ କର୍ମୀ ମନେ 'ପ୍ରେରଣା-ନନ୍ଦ
ରାଜ କର୍ମଚାରୀ ସେହି ମୂର୍ଚ୍ଛନା
ଶୁଣି, ପାନ୍ଥ ପ୍ରାଣେ ଖବ ଯାତନା ଯେ
ପ୍ରମାଣ ଦେଇଛ କବି ହେ

ଯନ୍ତ୍ରବାଣ ଠାରୁ ବାଣୀ ବାଣ ଟାଣ
ଶତ୍ରୁ ଦର୍ପ ଦଏ ଦାବି ହେ ॥୩॥

୪

ରୋଗ ତୁମ୍ଭ ଦେହ କରନ୍ତୁ ବସ
ମନ ବସକୁ ତା' ନାହିଁ ସାହସ
ବାର୍ଦ୍ଧକ୍ୟ ଗ୍ରାସିଛୁ ଶରୀର ପୁର
ସୁସ୍ଥ ମନପୁରେ ତୁମ୍ଭ ବିହାର ହେ
ଯେତେ ରୋଗ ଦୁଃଖ ହେଲେ ହେଁ
ଶୋଚନା ନକରି ଲେଖନୀ ଚଳାଇ
ବାଣୀ ପୂଜା ତୁମ୍ଭେ କର ହେ ॥୪॥

୫

ହେ ଜାଜ୍ଞପୁ କବି ତୁମରି ପାଇଁ
କରୁଛୁ ପ୍ରାର୍ଥନା ଜଗତ ସାଇଁ
ଦେଇ ସୁସ୍ଥମନ ସୁସ୍ଥ ଶରୀର
ରଖାନ୍ତୁ ତୁମ୍ଭକୁ ଏଣ୍ଡ ଉଜ୍ଜଳ ହେ
ବାଣୀପୂଜାର ପ୍ରେରଣା ଯେ
ଦେଇ ସବୁଦିନେ ତୁମ୍ଭ ହୃଦପୁରେ
ବିପଦେ ହୁଅନ୍ତୁ ସାହା ସେ ॥୫॥



# କହ କିଏ ହେବ ଆମ ନାଉରୀ

ଶ୍ରୀ ତ୍ରୈଲୋକ୍ୟ ନାଥ ମହାନ୍ତି

ପ୍ରିୟ ଚନ୍ଦ୍ରବାବୁ—

ଜାତୀୟକବି ଆଜି ଭୁବନେଶ୍ୱରଠାରେ ରୋଗଶଯ୍ୟାରେ ଶଯ୍ୟାଶାୟୀ । ତାଙ୍କୁ ଦେଖିବାକୁ, ସମ୍ବର୍ଦ୍ଧନା ଜଣାଇବାକୁ ଓ ଶଙ୍ଖାଳ-ବାକୁ ଅନେକ ବନ୍ଧୁ ଭୁବନେଶ୍ୱର ଯାଉଛନ୍ତି । ଖବରକାଗଜରେ ଏସବୁ ବାହାରୁଛି । ଆମପରି କେତେକ ଅକିଞ୍ଚନ ମଧ୍ୟ ଅଛନ୍ତି, ଯେ କି ଦୂରରେ ରହି ମଧ୍ୟ ତାଙ୍କର ଆରୋଗ୍ୟ ଓ ମଙ୍ଗଳ କାମନା କରି ପ୍ରାର୍ଥନା କରୁଛନ୍ତି । କିନ୍ତୁ ଏଥିରେ କଣ ତାଙ୍କପରି ଦେଶପ୍ରେମୀଙ୍କର ମନ ବୁଝୁଥିବ ?

ଆପଣ ଜାଣନ୍ତି କି ନାହିଁ କହି ପାରୁନାହିଁ-ଜାତୀୟ କବିଙ୍କ ସହ ଆମର ସମ୍ପର୍କ ବହୁଦିନର । ଯେତେବେଳେ ଆମେ 'ସ୍ପଷ୍ଟବାଦୀ' ପ୍ରକାଶ କରୁଥିଲେ ସେତେବେଳେ ତାଙ୍କର ଲେଖାରେ ଏହି ପତ୍ରିକାର ଅନେକ ସଂଖ୍ୟା ସମୃଦ୍ଧିମନ୍ତ ହୋଇଛି । କବିତା ଛଳରେ କବିଙ୍କର ସାମୟିକ ଭାବ ପ୍ରକାଶ ସେତେବେଳେ ଓଡ଼ିଶା ରାଜନୀତି କ୍ଷେତ୍ରରେ ଏକପ୍ରକାର ଆଲୋଡ଼ନ ସୃଷ୍ଟି କରିଛି । ମୋର ମନେହୁଏ ତାଙ୍କର ସେତେବେଳର ସେହି ପରିପ୍ରକାଶ ଏପର୍ଯ୍ୟନ୍ତ ମଧ୍ୟ ପ୍ରଶ୍ନବାଚକ ହୋଇ ରହିଛି ।

ମନେପଡ଼ୁଛି ସନ ୧୯୫୭ ମସିହା ମଧ୍ୟଭାଗର କଥା । ସୀମା ସରହଦ ନେଇ ଯେଉଁ ବ୍ୟାପକ ଅସନ୍ତୋଷ, ତା ସହିତ ବନ୍ୟାର ପ୍ରକୋପ ବିଶେଷକରି ଦଲଲଘାଇ ଭାଙ୍ଗିବା ପରେ ଯେଉଁ ଅଭୂତପୂର୍ବ ପରିସ୍ଥିତି ଏ ରାଜ୍ୟରେ ଓଡ଼ିଶାର ଶାସନ ତଥା କଂଗ୍ରେସର ନେତୃତ୍ୱରେ ଘଡ଼ିକେ ଘୋଡ଼ା ଛୁଟୁଥାଏ । ଠିକ୍ ଏତିକିବେଳେ ଆମର ଏକ ବିଶେଷ ସଂଖ୍ୟା ବାହାରିଥାଏ ଯେଉଁଥିରେ କବି ବୀରବାବୁ ଲେଖିଲେ—

"କେବେ କଏ ହେବ ଆମ ନାୟକ
ଚାଲନାହିଁ ଆଖି-ନକ୍ସ ବଢ଼ି ଦେଖି
ଅଗସ୍ତି ଶୋଷକୁ ମେଣ୍ଟାଇବ କଏ
ସବୁତ ଅଭାବ ଏଠି ସବୁର"

ଆପଣ 'ସ୍ୱପ୍ନଚାପାର' ସେ ସଂଖ୍ୟା ଦେଖିଛନ୍ତି କି ନାହିଁ କହି-ପାରୁନାହିଁ କିନ୍ତୁ ଜାଣିଛୁ କବିଙ୍କର ସେ ଲେଖାଟି ଉପରେ ଆମେ ଅନେକ ପାଠକଙ୍କଠାରୁ ଚିଠି ପାଇଛୁ ସେତେବେଳେ ଏହାର ସମୟୋପଯୋଗୀତାକୁ ପ୍ରସଂସା କରି ।

ଇତିମଧ୍ୟରେ ପ୍ରାୟ ପନ୍ଦରଟି ବର୍ଷ ବିତିଗଲାଣି । କିନ୍ତୁ କବିଙ୍କର ସେହି ପ୍ରଶ୍ନଟି ପ୍ରଶ୍ନରେ ହିଁ ରହିଛି । ସେହି ସୀମାସରହଦ ସମସ୍ୟା ଅମିମାଂସିତ ହୋଇ ରହିଛି । ଲୋକଙ୍କର ଅଭାବ ଅନାଟନ ଦୁଃଖ ଦୁର୍ଦ୍ଦଶା ବଢ଼ିଚାଲିଛି, ଥିଲା ନଥିଲାଙ୍କ ମଧ୍ୟରେ ତାରତମ୍ୟ ବଢ଼ିଚାଲିଛି । ସମସ୍ୟା ଉପରେ ସମସ୍ୟା ବଢ଼ିଚାଲିଛି । ଅବଶ୍ୟ ତା ସହିତ ଗରିବ ହଟାଅ ସ୍ଲୋଗାନର ଉଚ୍ଚସ୍ୱର ମଧ୍ୟ ବଢ଼ିଚାଲିଛି । କିନ୍ତୁ ବଢ଼ିମରୁଡ଼ିର ଏହି ଅନଗ୍ରସର ରାଜ୍ୟରେ ଯେଉଁ ଉତ୍କଟ ସମସ୍ୟାମାନ ଲାଗିରହିଛି ତାର ପ୍ରତିକାରର ପନ୍ଥା କଅଣ ଏବଂ କଏ ଏ ଜାତିର ମଙ୍ଗ ଧରି ତାକୁ ବାହିନେଇ ପାରିବ ତାହା ଏବେ ମଧ୍ୟ ଏକ ଜଟିଳ ପ୍ରଶ୍ନ । କବିଙ୍କର ସେହି ପଦକ 'କେବେ କଏ ହେବ ଆମ ନାୟକ' ଓଡ଼ିଶାର ଅଗଣିତ ଜନଗଣଙ୍କର ମନକୁ ଓ କବିଙ୍କର ନିଜ ମନକୁ ଯେ ଆନ୍ଦୋଳିତ କରୁଛି ଏହା ନିଃସନ୍ଦେହ । ଏ ଜାତି ଯଦି ଅଚିରେ ଏ ସମସ୍ୟାର ସମାଧାନ ନକରିବ ତେବେ କେବଳ ସମ୍ବର୍ଦ୍ଧନାରେ ଯେ କବିଙ୍କର ମନ ବୁଝିବ ଏକଥା କହି ହେଉ-ନାହିଁ ।



# ବୀରକିଶୋର ଓ "ବିଦ୍ରୋହୀ ବୀଣା"

● ଶ୍ରୀ ପରମାନନ୍ଦ ଅଧିକାରୀ

ଉତ୍କଳଭାରତୀଙ୍କ ବାଣୀ ଭଣ୍ଡାର ବନ୍ଧୁରସାଳ, ରୁଚିବନ୍ତ କାବ୍ୟ କବିତା ଦ୍ୱାରା ଯେପରି ସମୃଦ୍ଧ, ଜାତୀୟତା ବ୍ୟଂଜକ ବହ୍ନି-ବର୍ଷୀ କାବ୍ୟ କବିତାରେ ସେହିପରି ବୈଭବ-ବନ୍ତ, ସୂର୍ଯ୍ୟୋଜ୍ଜ୍ୱଳ ।

ଉତ୍କଳ ଗୌରବ ମଧୁସୂଦନ, କବି ଗୋପବନ୍ଧୁ, ଜାତୀୟକବି ବାଞ୍ଛାନିଧି, ଉତ୍କଳ ଭାରତୀ କୁନ୍ତଳା କୁମାରୀ, କବି ଗୋଦାବରୀଶ ଓ କାନ୍ତ-କବି ଲକ୍ଷ୍ମୀକାନ୍ତ ପ୍ରମୁଖ ଭାରତୀ ପ୍ରିୟନନ୍ଦନ ମାନଙ୍କ ପରି ଶ୍ରୀ ବୀରକିଶୋର ଦାସ ବି ଅନ୍ୟତମ କ୍ରାନ୍ତିକାରୀ ଜାତୀୟକବି । ଉକ୍ତ କବିମାନଙ୍କର କାବ୍ୟ, କବିତା ପରି କବି ବୀରକିଶୋରଙ୍କ ଜାତୀୟ କାବ୍ୟ କବିତାର ବିମଳ-କାନ୍ତିରେ ଓଡ଼ିଆ ସାହିତ୍ୟ ଗଂଚାଘର ବର୍ତ୍ତିତ, ମହିମମଣ୍ଡିତ ।

ଉତ୍କଳୀୟ ସୁପ୍ତ ଅନ୍ତରାତ୍ମାକୁ ବରାଭୟ ଦେଇ ବହ୍ନିମାନ ସଙ୍ଗୀତ ଦ୍ୱାରା ଜାଗ୍ରତ କରାଇବାରେ ଜାତୀୟକବି ବୀରକିଶୋର ସବ୍ୟସାଚୀ ସଦୃଶ ମହନୀୟ, ବରେଣ୍ୟ । "ସୁଜଳା ସୁଫଳା ଶସ୍ୟ ଶ୍ୟାମଳା, ଦେବଭୂମି ଭାରତର ଦିଗ-ଦିଗନ୍ତ ଯେତେବେଳେ ପରାଧୀନତାର ସୂଚୀଭେଦ୍ୟ ଘନ ତମିସ୍ରାରେ ଆଚ୍ଛାଦିତ, ଭାରତୀୟ ଜନତା-ଜନାର୍ଦ୍ଦନ ଯେତେବେଳେ ଆହତ ପକ୍ଷୀର ଅନ୍ତର୍ଦାହରେ ବିବ୍ରତ-ମରଣୋନ୍ମୁଖୀ, ଦେବାତ୍ମା ହିମାଳୟ ଯେତେବେଳେ ଆଶା ଓ ଆଶଙ୍କାର ସନ୍ଧି ସ୍ଥଳରେ ମୂକ ମୌନୀ, ସନ୍ଦିଗ୍ଧଚିତ୍ତ, ବେଦନାବିମୂଢ଼, ସାରା ଭାରତରେ ମୁକ୍ତି-ମନ୍ଦାକିନୀର ପ୍ରଖର ସ୍ରୋତ ପ୍ରବାହିତ, ସେତିକିବେଳେ ଜାତୀୟକବି ବୀରକିଶୋର ବଜ୍ର-ଗଂଭୀର ହିନ୍ଦୋଳ ଗାଇଥିଲେ ;

"ତୋ' ବିଜୟ ବାଦ୍ୟ ବଜାରେ ସୈନିକ
ଆଜି ଭାରତ ସ୍ୱାଧୀନ ରଣ
ସ୍ୱାଧୀନ ଯୁଗର ଶୁଭ କୁମ୍ଭ ବସା
ଶିବରେ ଉଡ଼ା କେତନା

ଦମନ ମନ୍ତରେ ଘନ ଗରଜନ
ବଧିର କଲଣି ମରଣର କାନ
କାରାଗାରଠାରୁ ପାରାବାର ଯାଏ
ଲୁଣ୍ଠିତ ଜୀବନ ଧନ "ବିଦ୍ରୋହୀ ବୀଣା" । ପୃ-୩

ଅଶ୍ରୁ-ବିକଳ ଜନତାଙ୍କୁ ସେ ଅଭୟ ବାଣୀ ଶୁଣାଇ ଆହ୍ୱାନ ଦେଇ ପୁଣି କହିଥିଲେ ;—

"ଅର ଫେରନାହିଁ, ଯୁଦ୍ଧ ସରନାହିଁ
ହିମାଚଳ ଶିରେ ଶବଦ ଶୁଭଇ
ଡରନାହିଁ ଆଉ ଡରନାହିଁ ।"

ସର୍ବଯୁଗରେ 'ଅସୀଠାରୁ ମସୀ ବଳୀୟାର' । ସେହି ମସୀ ବଳରେ କବି ସର୍ବଦ ବଳୟାନ । ସେହି ବଳୀୟାନ, ସର୍ବବନ୍ଦ୍ୟ କବିକୁଳର ସୌଖୀନ କବିତା ଲେଖାକୁ ଲକ୍ଷ୍ୟକରି କବି ଗାଇଥିଲେ:—

"କବି, ବାଜେ କବିତା ବନ୍ଦ କର
କମାଣ ପରିଏ କଲମ ଧର
ଥରେ ବଜା ନବ ସମର ଭେରୀ
ତରୁଣ ଯେତେ, ସେଇ ଫିକେତେ
ଆସନ୍ତୁ ଚୋଟେ ହର୍ଷେ ଘେରି ।"

ଜାତୀୟ ଆନ୍ଦୋଳନର ପ୍ରବଳ ସ୍ରୋତ ସହିତ ସରକାରୀ କର୍ମଚାରୀ-ମାନେ ସେତେବେଳେ ନିଜକୁ ସାମିଲ୍ ନକରି ବିଶ୍ୱାସଘାତକତାର ଫାସ ବସାଇ ଜାତୀୟ ଆନ୍ଦୋଳନର ଚଣ୍ଟିଚିପି ହତ୍ୟା କରିବାକୁ ପ୍ରବଳ ଚକ୍ରାନ୍ତ କରିଥିଲେ । ସେହିମାନଙ୍କ ଉଦ୍ଦେଶ୍ୟରେ ବିନମ୍ରରେ କବି କହିଥିଲେ—

"ଭାଇ ଯେତେ ପରକର ପଛେ, ଆମେ ତୁମର
ଯେଉଁପିଲେ ଟିପ ଅବା ବନ୍ଧୁ କରେ ଟିପ୍
ତୁମଲାଗି କରନ୍ତୁ ଏ ପ୍ରାଣ ବକସୀ ।"

ସେ ସତ୍ୟ ଅହିଂସାର ପ୍ରତୀକ ଜାତିର ଜନକ ମହାତ୍ମା ଗାନ୍ଧିଙ୍କ ଚରମ ଭକ୍ତରୂପେ ବିଶାଳବାହିନୀକୁ ବିଶେଷ କରିବା ପାଇଁ ମଧ୍ୟ ଅଣ୍ଟା ଭିଡ଼ି ଥିଲେ —

''ମାନ ମହତ୍ତ୍ୱକୁ ଡ଼ରଥିଲେ ଭାଇ
ଛାଡ଼ି ଏ ଇଳିତ ନିଶାକୁ
ନିଶା ନିତି ନିତି ତୁମକୁ ଖାଉଛି
ଦେଖ ନାହିଁ ନିଜ ଦଶାକୁ ।''

ଜାତୀୟ କବିଙ୍କର 'ବନ୍ଦେ'ତ୍ମ ବାଣୀ' ପର 'ମୋହନ-ବଂଶୀ' କାହା-କୋଳକଳ','ଜନମଭୂଇଁ 'ଅବୁଝ ସାଥୀ, ବଳୟ-ବାଣୀ, ଫୁଲଚନ୍ଦନ, ମରିନା-ହିଁ ସେ ମରଣଜନ୍ମୀ, ଡାକେ ବନ୍ଧୁକି ଡାକେ ଛରବାଘ, ସମରଯୁଗର ଅମର ସଙ୍ଗୀତ ପ୍ରଭୃତି ଅସଂଖ୍ୟ କାବ୍ୟ କବିତା ଲୋକଲୋଚନ ଅଗୋଚରରେ ଅଦ୍ୟାପି ରହିଛି ।

କବିଙ୍କର କୃତିସମ୍ଭାର ଜାତୀୟତା ଆନ୍ଦୋଳନ ଇତିହାସର ଗୋଟିଏ ଗୋଟିଏ ଅବିସ୍ମରଣୀୟ ଅଧ୍ୟାୟ ନୁହେଁ, ଓଡ଼ିଆ ସାହିତ୍ୟରେ ଗୋଟିଏ ଗୋଟିଏ ମାଣିକ ଖଣ୍ଡ । ତାଙ୍କ ପ୍ରତିଭା ପ୍ରସୂତ ପ୍ରତି ରଚନାର ଭାଷା ଯେପରି ସରଳ, ଶୈଳୀ ସେପରି ମଞ୍ଜୁଳ । ପ୍ରକାଶନ ଭଙ୍ଗୀ ଯେପରି ଏକାନ୍ତ ପ୍ରାଣସ୍ପର୍ଶୀ—ଅର୍ଥ ଗୌରବ ସେହିପରି ନବ ଉଦ୍‌ଗୀରଣକାରୀ । ଜାତୀୟ କବି ମଧ୍ୟ ଶିଶୁକବିତା ଲେଖିବାରେ ଅନ୍ୟତମ ମହାରଥୀ । ତାଙ୍କ ସମ୍ପାଦିତ 'ମୋ' ଦେଶ' ପତ୍ରିକା ପ୍ରତି ଓଡ଼ିଆର ଅନ୍ତରର ଗଭୀର-ତମ ପ୍ରଦେଶରେ ମୁଦ୍ରିତ-ଶଙ୍କାନୀ ହୋଇ ରହିଛି । ସୁଖର କଥା, ସେହି ମୁମୂର୍ଷୁ "ମୋ ଦେଶ"କୁ ବର୍ତ୍ତମାନ ଜାତୀୟ ମୁକ୍ତି ଆନ୍ଦୋଳନର ଅନ୍ୟତମ ଓଡ଼ିଶାର ସୈନିକ, ଅନ୍ୟତମ ସ୍ୱନାମଧନ୍ୟ ଶିଶୁ ସାହିତ୍ୟିକ ଶ୍ରୀରାମ ପ୍ରସାଦ ମହାନ୍ତି ସଂଜୀବିତ କରି ରଖିଥିବାରୁ ସମସ୍ତଙ୍କର ଧନ୍ୟବାଦାର୍ହ ।

———

# ଜାତୀୟ ଜୀବନ ଭାଷ୍ୟକାର
# ହେ ଜାତୀୟ କବି

● ଶ୍ରୀମତୀ ମନମୋହିନୀ ଦେବୀ

(ଅ.ଜ) ଅନ୍ତର କୋଣୁ ଚେତୁଛୁ ଚକିତେ ଉଦ୍ଦୀପନା,
(ଜଣୀ) ଜାତି ମଣ୍ଡପେ ଜାତୀୟ କବିର ସମ୍ବର୍ଦ୍ଧନା !
ବିଗତ ଜୀବନ ବିଶାଳ ସ୍ମାରକୀ-ଆଲୋକ ବାହୀ
ସଦା ଜୀବନ୍ତ ସ୍ମୃତିମନ୍ତ ପ୍ରେରଣାଦାୟୀ

ମୁମୂର୍ଷୁ ଜାତି-ବକ୍ଷ ଗହନ ତଳେ
ଗୁମରି ଗୁମରି କ୍ରନ୍ଦନ ଯେବେ ସରେ,
ନିରାଶ-ପରାସ ବୋଲା ଜାତି ଆଖିକୋଣ
ଚୋତୁଥିଲା ଯେବେ ନୀରବରେ ହାହାସ୍ୱନ,

ମହାମାନବର ଇଙ୍ଗିତ କବି ମଥାରେ ଧରି,
ଭାରତ କଣ୍ଠେ ସେଦିନ ମରମେ ବେଦନା ଭରି ।
ଗାଇଲ ଦେଶଗୀତି ମନ ମତାଣିଆ ନୂତନ ଛନ୍ଦେ,
ମାତିଲା ଏ ଜାତି-ଜୀବନ ନିମିଷେ ତୀବ୍ର ସ୍ପନ୍ଦେ ।

"ଆସରେ ସ୍ୱଜନ-ସୈନିକ ମୋର ଭାଇ ।
ଗଜପତି ଜାତି ଭୁଲି ଆମେ ଯିବା ନାହିଁ ।
'ଦଧିଚି' 'ଧରମା' ବଂଶର ରଖି ଖ୍ୟାତି,
ପାତିଦେବା ଦେଶ-ମଙ୍ଗଳେ ନିଜ ଛାତି ।"

*   *   *   *

ଉଠିଥିଲା ବାଜ ଅପୂର୍ବ ସ୍ୱରେ ତୁମର ବୀଣା
ଯା' ଶକତି ବଳେ ହୋଇଲା ଜନତା-ଜୀବନ କ୍ଷୀଣା ।
ବଜ୍ର କଠିନ ପୁଷ୍ପ କୋମଳ ଶର ନବୀନା,
ତେଜସ୍ୱିନୀ ସେ ଆହ୍ୱାନ ବାଣୀ ଜଗତଜଣା ।

ଆତ୍ମୀୟ-ଗୃହ-ମାୟା ଦେଲ ତେଜ ନିଃସ୍ୱ ତୁମେ,
ମୋହନବଂଶୀ ବାଇଲ ହେ ବୁଲି ଓଡ଼ିଶା ଭୂମେ ।

ନାସ୍ତି ଯଉବନ ଶିଶୁ ମଧୁ ଆବେଦନ,
କରିନାହିଁ ତବ ପଉରୁଷ ବିଚଳନ ।
ପିତା-ଗୁରୁଜନ ପ୍ରଖର ବାରଣ ସ୍ୱନ
ଶୁଣିନାହଁ, ଦେଇ ବଧିର ଶ୍ରାବଣ ସଜ ।

ସାଧିଲ ଯେ ବ୍ରତ ଜାତିର ସେତବ ଲେଖନୀ ଧାର,
ନଭ-ସ୍ଥଳ-ଜଳ ଆଲୋକ-ଅନଳ ସାକ୍ଷୀ ତାର ।

*　　*　　*　　*

ଯାଇଛି ସେଦିନ ଯାଉଛ ସକଳ ବ୍ୟାଘାତ ଏଡ଼ି,
ଦେଶ ମାତୃକାର ଫିଟିଛି ଚରଣୁ ବିଦେଶୀ ବେଡ଼ି ।
ଧନ୍ୟ ନାହିଁତ ଜନମର ଦୁର୍ଯୋଗ;
(କରେ) ନିଜ ଘରକୋଣେ ଅଶେଷ ଯାତନା ଭୋଗ !
(ମାତ୍ର) ତବ ସୁକରମ ତୁମେତ ଯାଇଛ ସାଧି
(ଆଜ) ଘାରୁଛି ସାହସୀ-ବପୁକୁ ବୟସ ବ୍ୟାଧି !

ଜାଣିବ ଏତକ ତବକୃତି ଭୁଲି ନପାରେ ଜାତି,
(ତେଣୁ) ଜାତିର ଶ୍ରଦ୍ଧା ଘେନ ତବ ସ୍ନେହ ହୃଦୟୁ ପାତି ।

———

# ଅଶ୍ରୁ-ତର୍ପଣ

● ଶ୍ରୀ ବୈକୁଣ୍ଠ ନାଥ ପାଣିଗ୍ରାହୀ

ମୋର ପୂଜ୍ୟ ଗୁରୁ ସ୍ୱର୍ଗୀୟ ବାଞ୍ଛାନିଧି ମହାନ୍ତି ସନ ୧୮୯୭ ମସିହା ଅପ୍ରେଲ ତା୨୦ ଖରେ ବାଲେଶ୍ୱର ଜିଲ୍ଲା ଅନ୍ତର୍ଗତ ବାସୁଦେବ-ପୁର ଥାନା ଅଧୀନ ଇରମ ଗ୍ରାମରେ ଜନ୍ମଲାଭ କରିଥିଲେ । ସ୍ୱୀୟ ପ୍ରତିଭା ବଳରେ ବି.ଏ, ବି. ଏଲ୍ ଡିଗ୍ରୀ ଲାଭ କରି ଅଜସ୍ର ଧନ ଉପାର୍ଜ୍ଜନ କରି ପାରିବାର ଦକ୍ଷତା ତାଙ୍କର ଥିଲା । କିନ୍ତୁ ମହାତ୍ମା ଗାନ୍ଧିଙ୍କର ମୋହନ-ମନ୍ତ୍ର ତାଙ୍କୁ ଏପରି ପାଗଳ କରିଦେଲା ଯେ ସେ ସମସ୍ତ ସୁଖ ସ୍ୱାଚ୍ଛନ୍ଦ୍ୟ ଓ ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ଭାରତ ଜନନୀଙ୍କ ହସ୍ତରୁ ଦୀର୍ଘ ୨୦୦ ବର୍ଷର ପରାଧୀନତାର ଶୃଙ୍ଖଳ ଛିନ୍ନ କରିବା ନିମନ୍ତେ ବାପୁଜୀଙ୍କର ପ୍ରଦର୍ଶିତ ସ୍ୱାଧୀନତା ଆନ୍ଦୋଳନ ରୂପକ ଅଗ୍ନିରେ ଝାସଦେଲେ । ଫଳରେ ସମଗ୍ର ଓଡ଼ିଶାର ସୁପ୍ତ ଜନତା ପ୍ରାଣରେ ସ୍ୱାଧୀନତା ହାସଲ ପାଇଁ ଏକ ନବୀନ ଜାଗରଣ ସୃଷ୍ଟି କରିବା ତାଙ୍କ ଜୀବନର ବ୍ରତ ହେଲା । ୧୯୨୧ ମସିହା ଠାରୁ ଏହି ଆନ୍ଦୋଳନ ଓଡ଼ିଶାରେ ପ୍ରବଳ ଆକାର ଧାରଣ କଲା । ମୋଟ ଉପରେ ୧୯୨୪ ମସିହାରେ ମୁଁ ମୋର ଗୁରୁଙ୍କ ସ୍ପର୍ଶରେ ଆସିଲି । ସେହିବର୍ଷ ମୋର ଅଙ୍ଗେ ନିଭାଇଥିବା ପ୍ରତ୍ୟକ୍ଷ ଘଟଣା ମୁଁ ଏଠାରେ ବର୍ଣ୍ଣନା କରୁଅଛି ।

ସିମୁଳିଆ ଥାନା ଅଧୀନ ବଣିନସୁନ୍ଦା ଗ୍ରାମରେ ଚକ୍ରଧର ପଟ୍ଟ-ନାୟକ ଜଣେ କଂଗ୍ରେସ କର୍ମୀ ଥିଲେ । ସେ ତାଙ୍କ ସାହିରେ ଗୋଟିଏ ଥିଏଟର ଦଳ ଆରମ୍ଭ କରି ମୋତେ ଏବଂ ମୋ ପରି ଏଗାର ଜଣ ପିଲାଙ୍କୁ ନେଇ ନାଚ ଶିଖାଇଲେ । ସେହିବର୍ଷ କଟକରେ ନିଖିଳ ଉତ୍କଳ ରାଜନୈତିକ ସମ୍ମିଳନୀର ପ୍ରଥମ ଅଧିବେଶନ ଅନୁଷ୍ଠିତ ହୋଇଥାଏ । ଚକ୍ରଧର ବାବୁ ମୋତେ ଏବଂ ନିତ୍ୟାନନ୍ଦ ପଟ୍ଟନାୟକ ଓ ବିଷ୍ଣୁ ମୋହନ ପଟ୍ଟନାୟକ ନାମକ ଆଉ ୨ଜଣ ପିଲାଙ୍କୁ ବାଛିଲେ । ଦିନେ ସଂଧ୍ୟାବେଳେ ଏହି ତିନି ପିଲାଙ୍କୁ ସଙ୍ଗରେ ଘେନି ଏହି ସମ୍ମିଳନୀରେ ଯୋଗଦେବା ନିମିତ୍ତ ସେ ମାର୍କୋଣା ଷ୍ଟେସନରୁ ରେଳ ଯାତ୍ରା କଲେ ।

ଗାଡ଼ି ଭଦ୍ରକ ଷ୍ଟେସନରେ ଛୁଟା ହେବାର ପ୍ରାୟ ପାଞ୍ଚ ମିନିଟ୍ ପରେ, ଜଣେ ଖଦଡ଼ ପୋଷାକ ପରିଧାନ କରିଥିବା ଶ୍ୟାମଳ ବର୍ଣ୍ଣର ଲୋକ ଆମର ଡ଼ବାକୁ ଉଠି ଆସିଲେ ଏବଂ ତାଙ୍କ ସଙ୍ଗରେ ଆଉ ଚାରିଜଣ ଲୋକ ଗୋଟିଏ ଗ୍ରେଟ ହାରମୋନିୟମ୍ ଓ ଗୋଟିଏ ମୃଦଙ୍ଗ ଧରି ଆସିଲେ । ଚକ୍ରଧର ବାବୁଙ୍କ ସହିତ କେତେ ଆଲୋଚନା ହେଲା । କିଛି ସମୟ ପରେ ଗାଡ଼ି ଚାଲିଲା । ତାପରେ ପ୍ରଥମ ବ୍ୟକ୍ତି ଜଣକ ହାରମୋନିୟମ୍ ବଜାଇ ଆମ ୩ଜଣଙ୍କର ସ୍ୱର ପରୀକ୍ଷା କଲେ ଏବଂ ଗୀତ ଗାଇବାକୁ କହିଲେ । ଆମେ ଥିଏଟରରୁ ଶିଖିଥିବା ଗୀତ ଦୁଇଟି ଗାଇଲୁ । ଆମର ଗୀତ ଶେଷହେବା ପରେ ସେ ଗୋଟିଏ ଗୀତ ଆଗ ଗାଇଲେ ଓ ଆମକୁ ପଛରେ ଗାଇବା ପାଇଁ କହିଲେ । ସେ ଗୀତଟି ତାଙ୍କ ନିଜର ରଚିତ କି ଅନ୍ୟ କାହାର ରଚିତ ମୁଁ କହି ପାରୁନାହିଁ । ଓଡ଼ିଆ ଜାତି ପ୍ରାଣରେ ଉତ୍କଳ ଜନନୀଙ୍କ ସେବା କରିବା ପାଇଁ କପରି ନୂତନ ଉନ୍ମାଦନା ସୃଷ୍ଟି କରିବାର ଏକ ଅମୋଘ ଅସ୍ତ୍ରରୂପେ ସେ ଗୀତଟି ଲେଖା-ଯାଇଥାଏ । ସେ ଗୀତଟି ସେ ଯେତେବେଳେ ଗାଇଲେ, ସେହି ଡବାରେ ବସିଥିବା ଆବାଳ-ବୃଦ୍ଧ-ବନିତା ମନ୍ତ୍ରମୁଗ୍ଧବତ୍ ତାଙ୍କ ଆଡକୁ ଦୃଷ୍ଟି ପକାଇ ଥାଆନ୍ତି । ପରେ ମୁଁ ଉକ୍ତ ସଙ୍ଗୀତଟି ତାଙ୍କଠାରୁ ଲେଖିନେଇ ଶିଖିଥିଲି । ତାହା ଏଠାରେ ଉଲ୍ଲେଖ କରୁଛି ।

"ଆସରେ ଆସରେ ସୁପ୍ତ ଓଡ଼ିଆ ବୀର ଓଡ଼ିଆ ଜାତି
ଆସରେ ଆସରେ ମାଆ କୋଳେ ଧାଇଁ ଜାଗାସୁ ଗୌରବେ ମାତି
ଉତ୍କଳ ଜନନୀ ବକଳାଙ୍ଗୀ ହୋଇ
ପୁଅଙ୍କୁ ସୁମରି ଅଧୀରେ କାନ୍ଦଇ
ଦେଖି କହେ ଭାଇ ଦୁଃଖ ନ ଆସଇ ପଥର କଲିକ ଛାତି ।"

ରାତି ପ୍ରାୟ ୩ଟା ବେଳେ ଗାଡ଼ି କଟକରେ ପହଞ୍ଚିଲା । ଆମକୁ ପାଛୋଟି ନେବା ପାଇଁ କେତେ କର୍ମୀ ଷ୍ଟେସନର ପ୍ଲାଟଫର୍ମରେ ଅପେକ୍ଷା କରିଥିଲେ । ଆମେ ଗାଡ଼ିରୁ ଓହ୍ଲାଇବା ମାତ୍ରେ ସଙ୍ଗେ ସଙ୍ଗେ ଦୁଇ ତିନି ଖଣ୍ଡ ଘୋଡାଗାଡ଼ିରେ ବସିବା ପରେ ଗାଡ଼ିଗୁଡ଼ିକ ନିର୍ଦ୍ଦିଷ୍ଟ ପଥରେ ଚାଲିଲା ।

ରାତ୍ରରେ ଆମେ ଗୋଟିଏ କୋଠାଘରେ ରହିଲୁ । ସକାଳର ନିତ୍ୟକର୍ମ ସମାପ୍ତି ପରେ ବାଞ୍ଛାନିଧି ବାବୁ ଆମକୁ ପାଖରେ ବସାଇ ଗୀତ ଗାଇବା ଆରମ୍ଭ କରିଦେଲେ । ଏହିପରି ପ୍ରାୟ ୧୫ଦିନ ପର୍ଯ୍ୟନ୍ତ ସେ ଆମକୁ ଗୀତ ଶିଖାଇଲେ । ଗୀତଟିଏ ନିଜେ ଲେଖି ଆଗ ସ୍ୱର ଧରି ସେ ଗାନ କରନ୍ତି । ଆମେ ତାଙ୍କର ସ୍ୱର ଧରୁ । ଏହିପରି ସେ ଅନେକ ଗୁଡ଼ିଏ ଗୀତ ଆମକୁ ଶିଖାଇଲେ । ମଧ୍ୟେମଧ୍ୟେ କଣ୍ଠ ଗୀତ ଗୁଡ଼ିକର ସ୍ୱର ବିଗିଡ଼ିଗଲେ, ତାଙ୍କର ସେହି କୋମଳ କରାଙ୍ଗୁଳିରୁ କେତେ ସ୍ନେହ-ବୋଳା ଗୁଡ଼ପୋଡ଼ା ଏ ଗାଲରେ ବସିଯାଇଛି, ତାର ସଂଖ୍ୟା ବି ନାହିଁ । ଆବାହନ ସଂଗୀତ କଣ, ବାଦ୍ୟ ସଂଗୀତ କଣ, ଜାତୀୟ ସଂଗୀତ କଣ, ଏ ବିଷୟରେ ଆମର ସ୍ପଷ୍ଟ ଧାରଣା ନଥାଏ । ଦୁଇ ତିନିଦିନ ପରେ ଆମେ ବାଞ୍ଛାନିଧି ବାବୁଙ୍କୁ 'ମାଷ୍ଟ୍ରେ' ବୋଲି ଡ଼ାକିଲୁଁ । ସେ ଆମ ଜଣଙ୍କୁ ଅତି ଭଲପାଆନ୍ତି ଓ ଆମର ଖାଦ୍ୟପେୟ ସମ୍ବନ୍ଧରେ ତୀବ୍ର ଦୃଷ୍ଟି ଦିଅନ୍ତି । ଏହିପରି ପ୍ରାୟ ଆମର ଗୀତ ଶିକ୍ଷାକାର୍ଯ୍ୟ ଖୁବ୍ ଦ୍ରୁତ ଗତିରେ ଚାଲିଥାଏ ।

ଆମେ ସେଠାରେ ରହିବାର ପ୍ରାୟ ଚାରିଦିନ ମଧ୍ୟରେ ଓଡ଼ିଶାର ବହୁ ନେତୃସ୍ଥାନୀୟ ଲୋକ ସେଠାରେ ଆସି ପହଞ୍ଚିଲେ । କ୍ରମେ ଆମ କୋଠାଘରଟି କର୍ମୀବୃନ୍ଦଙ୍କର ଗୋଟିଏ ଆଡ଼୍ଡାସ୍ଥଳ ହେଲା । ଓଡ଼ିଶାର ବିଶିଷ୍ଟ ସଂଗୀତଜ୍ଞ ମନମୋହନ ସାବତ, ତାଙ୍କର ଜଗୁଆ ନାମଧେୟ ଗୋଟିଏ କୃଷ୍ଣ ଶିଷ୍ୟକୁ ସଙ୍ଗରେ ଘେନି ସେଠାରେ ଆସି ପହଞ୍ଚିଲେ । ଭଙ୍ଗା ବେହେଲକୁ ନୂତନ କଳେବର ଦେଇ ସେ ଏପରି ବଜାଇ ପାରନ୍ତି ଯେ, ପଶୁପକ୍ଷୀମାନେ ବି ତାଙ୍କର ବଶ୍ୟତା ସ୍ୱୀକାର କଲାପରି ମନେହୁଏ । ମନମୋହନ ସାବତ ପ୍ରାୟ ୮ଫୁଟ ଉଚ୍ଚତା ବିଶିଷ୍ଟ ସ୍ୱାସ୍ଥ୍ୟବାନ ମୂର୍ତ୍ତି । ଗୋରା ତକ ତକ ଚେହେରା, ମସ୍ତକୋପରି ଭୁଜଙ୍ଗ କୁଞ୍ଚିତ କୃଷ୍ଣଘନ ନିବିଡ଼ କେଶରାଜି, ଓ ସ୍କନ୍ଧ ଦେଶର ଉଭୟ ପାର୍ଶ୍ୱସ୍ଥ କେଶଗୁଚ୍ଛର ଦୁଇଟି ବର୍ତ୍ତୁଳ ପେଣ୍ଡୁ, ଆଜି ସୁଦ୍ଧା ବି ମୋ ଆଖି ଆଗରେ ଝଲସି ଯାଉଛି । କାଳର କରାଳ କବଳରେ ପଡ଼ି ସେ ଇହଧାମରୁ ବିଦାୟ ନେଲେଣି । ତାଙ୍କର ସୁଯୋଗ୍ୟ ପୁତ୍ର ତତ୍କାଳୀନ ଜଗୁଆ, ଆଜି ଭଦ୍ରଖ ହାଇ ସ୍କୁଲରେ ସଂଗୀତ ଶିକ୍ଷକ ବିଶିଷ୍ଟ ସଂଗୀତଜ୍ଞ ଶ୍ରୀ ଜଗବନ୍ଧୁ ସାହୁ ନାମରେ ସମଗ୍ର ଓଡ଼ିଶାରେ ପରିଚିତ । ତାଙ୍କର ସ୍ୱର୍ଗୀୟ ଗୁରୁଙ୍କର ନାମ

ସ୍ମରଣୀୟ କରିବା ପାଇଁ ଭଦ୍ରଖରେ ସ୍ଥାପିତ ମଦନମୋହନ ସଙ୍ଗୀତ ପ୍ରତିଷ୍ଠାନର ସେ ମୁଖ୍ୟ ଉଦ୍ୟୋକ୍ତା । କିନ୍ତୁ ମୁଁ କର୍ମମୟ ଜଞ୍ଜାଳରେ ପଡ଼ି ମୋର ପୂଜ୍ୟ ଗୁରୁଙ୍କ ପାଇଁ କେତେବେଳେ ହେଲେ ଟିକିଏ ଅଶ୍ରୁତର୍ପଣ କରି ପାରିଲି ନାହିଁ ।

ଉତ୍କଳର ହରେକୃଷ୍ଣ ମହତାବ ସେତେବେଳେ କଂଗ୍ରେସର ଜଣେ ବିଶିଷ୍ଟ କର୍ମୀରୂପେ ପରିଚିତ । ୧୯୨୧ ମସିହାରେ ସେ ନାଗପୁର କଂଗ୍ରେସ ଅଧିବେଶନରେ ଯୋଗଦେଇ ଗାନ୍ଧିଜୀଙ୍କର ସ୍ୱରାଜ ସାଧନାରେ ଦୀକ୍ଷିତ ହେଲେ ଏବଂ କଲେଜ ଅଧ୍ୟୟନ ପରିତ୍ୟାଗ କଲେ । ସେ ପ୍ରାୟ ବହୁତ ସମୟ ଆମର ଏହି କୋଠାରେ ରହି କର୍ମୀମାନଙ୍କ ସହିତ ନାନା ବିଷୟ ଆଲୋଚନା କରନ୍ତି । ଆମେ ବାଞ୍ଛାନିଧି ବାବୁଙ୍କ ଗ୍ରୁପ ହିସାବରେ ଉତ୍କଳ ସମ୍ମିଳନୀରେ ଗୀତ ଗାଇବା ପାଇଁ ଶିକ୍ଷା ପାଉ-ଥିବାରୁ ସେ ଆମକୁ ଅତି ଭଲ ପାଆନ୍ତି ଏବଂ ମାଷ୍ଟ୍ରଙ୍କ ରଚିତ ଗୀତ ଗୁଡ଼ିକର ସ୍ୱର ଓ ଭାବ ଶୁଣି ଅତି ଖୁସି ହୁଅନ୍ତି ।

ଗୋପବନ୍ଧୁ ଦାସ ସେତେବେଳେ ହାଜାରିବାଗ୍ ଜେଲରେ ଥିଲେ । ସଭା କାର୍ଯ୍ୟ ଆରମ୍ଭ ହେବାର ଦୁଇଦିନ ପୂର୍ବରୁ ସେ ଜେଲରୁ ଖଲାସ ହୋଇ ଆମର ଏହି କୋଠାରେ ପହଞ୍ଚିଲେ । ଏହାଙ୍କ ପୂର୍ବରୁ ଆମ ବାଲେଶ୍ୱର ଜିଲ୍ଲାରୁ ଶ୍ରୀଯୁକ୍ତ ନନ୍ଦକିଶୋର ଦାସ, ନୀଳାମ୍ବର ଦାସ, କରୁଣାକର ପାଣିଗ୍ରାହୀ, ସୁରେନ୍ଦ୍ର ନାଥ ଦାସ, ମହମ୍ମଦ ହନିଫ୍ ଆଦି ବହୁତ ନେତୃବୃନ୍ଦ ଆସି ଏଠାରେ ସମବେତ ହୋଇଥାଆନ୍ତି ଏବଂ ଗୋପବନ୍ଧୁ ଦାସଙ୍କୁ ଅପେକ୍ଷା କରିଥାଆନ୍ତି । ତାଙ୍କର ଆସିବା ଦିନ ରାତିରେ ତାଙ୍କୁ ପାଛୋଟି ଆଣିବା ପାଇଁ ପ୍ରାୟ ସମସ୍ତ କର୍ମୀ ଷ୍ଟେସନକୁ ଯାଇଥିଲେ । କେବଳ ମାଷ୍ଟ୍ରେ ଆମକୁ ଗୀତ ଶିଖାଇବା ପାଇଁ ରହିଲେ । ପରଦିନ ସକାଳେ ଦେଖିଲି ଯେ ଗୋପବନ୍ଧୁ ଦାସ କର୍ମୀମାନଙ୍କୁ ବସାଇ କେତେକ ଗୁରୁତ୍ୱପୂର୍ଣ୍ଣ ବିଷୟ ଆଲୋଚନା କରୁଛନ୍ତି । ତାଙ୍କ ଦେହରେ ଖଣ୍ଡିଏ ସଫା ଧଳା ମୋଟା ଖଦଡ଼ ଚାଦର, ଆଣ୍ଠୁ ଲୁଚିଥିବା ଭଳି ଖଣ୍ଡିଏ ଧଳା ଖଦଡ଼ ଧୋତି, ମୁଖମଣ୍ଡଳରେ ଅଳ୍ପ ଦାଢ଼ି, ମସ୍ତକରେ ସ୍ୱଳ୍ପ ଲମ୍ବ କେଶରାଶି ଓ କାନ୍ଧରେ ଝୁଲୁଥିବା ଲମ୍ବ ଓସାରିଆ ଫିତାର ଖଦଡ଼ ବ୍ୟାଗ୍ ଯେ ଦେଖିଛି ସେ ଜୀବନରେ କେବେହେଲେ ଭୁଲି ପାରିବ

ନାହିଁ । ସଭାର ଆୟୋଜିତ ପଦାର୍ଥ ଗୁଡ଼ିକ ମଧ୍ୟରୁ କେଉଁଠୁ କଣ ଆସେ, କିଏ ବା କିଏ ହଜାର ହଜାର ଲୋକ କିପରି ଖାଆନ୍ତି ଓ କେଉଁଠି ରହନ୍ତି ତାହା ଏବେ କଳ୍ପନା କରିବା କଷ୍ଟସାଧ୍ୟ ।

ଆମ କୋଠାଠାରୁ ପ୍ରାୟ ଅର୍ଦ୍ଧ ମାଇଲ ଦୂରରେ ସଭାମଣ୍ଡପ ତିଆରି ହୋଇଥାଏ । ଯେତେଦୂର ମୋର ମନେ ହେଉଛି ତା୨୫।୭।୨୪ ମସିହାରେ ରାଜନୈତିକ ସମ୍ମିଳନୀ ହୋଇଥିଲା । ବିରାଟ ଜନତାର ସମାବେଶରେ ୩ଦିନ ଧରି ସଭାକାର୍ଯ୍ୟ ଚାଲିଥିଲା ।

ବଙ୍ଗର ବିଶିଷ୍ଟ ନେତା ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟ ସଭାପତିତ୍ୱ କରିବା ପାଇଁ ଆଗରୁ ସ୍ୱୀକୃତି ପ୍ରଦାନ କରିଥିଲେ । ତାଙ୍କର ଅଭିଭାଷଣକୁ ସେ ଇଂରାଜୀ ଭାଷାରେ ଲେଖିଥିଲେ । ଓଡ଼ିଶାବାସୀ ତାଙ୍କର ଉକ୍ତ ଇଂରାଜୀ ଅଭିଭାଷଣକୁ ବୁଝିପାରିବେ ନାହିଁ । ତେଣୁ ଏହା ଓଡ଼ିଆରେ ଛପାଯିବା ଏକାନ୍ତ ଦରକାର । ଏତେ କମ ସମୟ ଭିତରେ ଏ କାର୍ଯ୍ୟ କିପରି ସମାଧାନ ହେବ, ଏ ବିଷୟ ନେଇ ଗୋପବନ୍ଧୁ ଦାସ ଏକାନ୍ତ ଚିନ୍ତିତ ହୋଇ ପଡ଼ିଲେ । ୨୪ଘଣ୍ଟା ମଧ୍ୟରେ ଉକ୍ତ ଇଂରାଜୀ ଅଭିଭାଷଣକୁ ଓଡ଼ିଆରେ ଅନୁବାଦ କରିବାକୁ ଶ୍ରୀଯୁକ୍ତ ନନ୍ଦକିଶୋର ଦାସଙ୍କୁ ଦେଲେ । ନନ୍ଦବାବୁ ତାହାକୁ ଓଡ଼ିଆରେ ଅନୁବାଦ କରି ଦେବା ପରେ ସଙ୍ଗେ ସଙ୍ଗେ ତାହା ପ୍ରେସରେ ଦିଆଗଲା ଏବଂ ଅନେକଗୁଡ଼ିଏ ଗ୍ଲେଟ ବହି ନରଯାଇ ସଭାରେ ବଣ୍ଟାଯିବା ପାଇଁ ସ୍ଥିର ହେଲା । ଉକ୍ତ ଓଡ଼ିଆ ଅଭିଭାଷଣର ବହି ସେଦିନ ସଭାରେ ବଣ୍ଟାଯିବା ସମୟରେ ମୁଁ ଖଣ୍ଡିଏ ଆଣିଥିଲି । ଏ ପର୍ଯ୍ୟନ୍ତ ମୁଁ ତାହା ରଖିଛି ।

ନିର୍ଦ୍ଦିଷ୍ଟ ଦିବସରେ ସଭାକାର୍ଯ୍ୟ ଆରମ୍ଭ ହେଲା । ସଭାପତିଙ୍କ ଅଭ୍ୟର୍ଥନାରେ ମାଷ୍ଟ୍ର ଆମକୁ ନିମ୍ନଲିଖିତ ଗୀତଟି ନିଜେ ରଚନା କରି ଶିଖାଇ ଥିଲେ । ସଭାପତି ତାଙ୍କର ଆସନ ଗ୍ରହଣ କଲାପରେ ଆମେ ଉକ୍ତ ଗୀତଟି ଗାଇଲୁ ।

"ଦେଖ ଆସିଛନ୍ତି ଆମ୍ଭ ଦେଶକୁ ବିଜ୍ଞାନ ବୀର ଜ୍ଞାନ ସାଗର,
ତ୍ୟାଗୀ ପ୍ରବର
ଜୁଡ଼ିଛି ଆମ୍ଭ କରମକୁ ସରକତାର, ସେ ଅବତାର ଧୀର ସୁନ୍ଦର"

ସେତେବେଳେ କନିକାର ଅତ୍ୟାଚାରର ସମଗ୍ର ଓଡ଼ିଶାର ଏକ ମର୍ମନ୍ତୁଦ ଘଟଣା ଥିଲା । ଗୁରୁ ମୋର ପ୍ରଥମ ଦିନ ସଭା କାର୍ଯ୍ୟ ଶେଷହେବା ପରେ ସେତେବେଳେ କନିକାର ଅତ୍ୟାଚାର ସମ୍ବନ୍ଧୀୟ ନିଜେ ଲେଖିଥିବା ଗୀତଟି ଗାଇଲେ ସେତେବେଳେ କିଏ ନ କାନ୍ଦିଛି ? ଗୀତଟି ଗାଉଥିବା-ବେଳେ ତାଙ୍କ ଚକ୍ଷୁରୁ ଅବିରାମ ଅଶ୍ରୁଧାରା ନିର୍ଗତ ହେଉଥାଏ । ସଭାପତି ମଧ୍ୟ କନିକାର କରୁଣ କାହାଣୀ ଶ୍ରବଣ କରି ଶୋକ ସମ୍ବରଣ କରି ନ ପାରି କାନ୍ଦି ପକାଇ ଥିଲେ । ପରେ ମୁଁ ମାଷ୍ଟ୍ରଙ୍କ ଠାରୁ ଗୀତଟି ଲେଖି ନେଇଥିଲି । ତାହା ଏଠାରେ ଉଲ୍ଲେଖ କରୁଛି ।

"କେତେଦିନ ଆଉ ଦୁଃଖିନୀ କନିକା ଅମିତ ଯାତନା ସହିବ
ଦୁଃଖ ସହିବାକୁ ଦୁଃଖିନୀ କପାଳେ ଲେଖିଥିଲା କି ତା ଦଇବ ।
କର ଦେଇ ଦେଇ ସରିଛି ସମ୍ବଳ, ମାଡ଼ ଖାଇ ଖାଇ ହରାଇଛି ବଳ
ଆହା ବୋଲିବାକୁ ସାହା କେହି ନାହିଁ କା ଆଗେ ଏ ଦୁଃଖ କହିବ ।
ପଂଜାବ କାହାଣୀ ଶୁଣିଥିଲି କାନେ, କନିକାର ଲୀଳା ଦେଖୁଛି ନୟନେ
ଶୁଣ ଅତ୍ୟାଚାର କନିକାର ତୁଲେ, ପଞ୍ଜାବ କି ସରି ହୋଇବ ।
କନିକା ରାଇଜ ଜମିଦାରୀ ଗୁଡ଼ିକ ଏତେ ଅତ୍ୟାଚାର ଏତେ ବଳାତ୍କାର
ହୋଇଥିଲା ଯଦି ନୈଶୁର ଜୈପୁର, କି ହୁଅନ୍ତା କିଏ କହିବ ।
ଅତ୍ୟାଚାରୀର କଚ ପିଶାଚ ମାନସ, ଅତ୍ୟାଚାରେ ଯିଏ ଲଭଇ ସନ୍ତୋଷ
ପାପୀ ପାପକର୍ମ ବିଦେ ନ କରିଲେ ଆହାର କି ତାକୁ ରୁଚିବ ।
ଦୁଃଖ ସହି ସହି କନିକା ରମଣୀ ଅହଲ୍ୟା ସଦୃଶ ହୋଇଲା ପାଷାଣୀ
ନାହିଁ ବା ଭଗବନ୍ତ କେହି ଆଉ ରାମ ପାଦ ପରଶେ ଉଦ୍ଧରିବ ।
ତା ଦୁଃଖ ଫେରିବା ପାଇଁ ଗୋପବନ୍ଧୁ ଉତ୍କଳର ପ୍ରାଣ ଧନଜନ ବନ୍ଧୁ
ବରିନେଲେ ପାର୍ଦ କାରାଗାର ଦଣ୍ଡ ନାହିଁ କେହି ଏହା ସହିବ ।
ନାହିଁଟି ଉତ୍କଳେ ଦଶଟି ଅକାଳୀ, ବାଇବାକୁ ବୀର ବାଇଦ କାହାଳୀ
ହୁଅନ୍ତା ଦିନକେ ନାଗପୁର ନାଭା, ଗୁରୁଦ୍ୱାର ଆହା ଆହବ ।"

ଏହି ଗୀତଟି ଶୁଣି ହଜାର ହଜାର ଲୋକ ଦୁଃଖରେ ଅଭିଭୂତ ହୋଇ ଯାଇଥିଲେ । ମାଷ୍ଟ୍ରେ ଗାଇସାରିବା ପରେ ପଣ୍ଡିତ ଗୋପବନ୍ଧୁ ଦାସ କାନ୍ଦି କାନ୍ଦି କନିକାର ନିରୀହ ଜନତା ଉପରେ ଘଟୁଥିବା ଅତ୍ୟାଚାରର କରୁଣ କାହାଣୀ ବର୍ଣ୍ଣନା କରୁଥାଆନ୍ତି । ତାଙ୍କର ଚକ୍ଷୁଦ୍ୱୟରୁ ଅବିରାମ ଗତିରେ

ଲୋତକଧାର ନିର୍ଗତ ହେଉଥାଏ । ଗୋପବନ୍ଧୁଙ୍କର ଓଜସ୍ୱିନୀ ଭାଷଣରେ ଶୋକାକୁଳ ହୃଦୟରେ କନକା ବାମୀଙ୍କର ଅତ୍ୟାଚାର ବର୍ଣ୍ଣନା ସଭା ମଧ୍ୟସ୍ଥ ପ୍ରତ୍ୟେକ ନରନାରୀଙ୍କ ହୃଦୟରେ ଦୁଃଖର ସୋ୍ତ ଛୁଟାଇ ଦେଇଥିଲା ! ଏହି ସଭାରେ ଗୋପବନ୍ଧୁଙ୍କୁ 'ଉତ୍କଳମଣି' ଆଖ୍ୟା ପ୍ରଦାନ କରା ଯାଇଥିଲା । ତାପରେ ଗୁରୁ ମୋର ଗାନ୍ଧିଙ୍କର କାର୍ଯ୍ୟାବଳୀ ବର୍ଣ୍ଣନା କରି ତଳଲିଖିତ ଗୀତଟି ଗାଇଥିଲେ ।

"ଭାରୁନାହୁଁ ଭାଇ ମହାତ୍ମା କାପାଇଁ କଷ୍ଟ ଏତେ ଦୁଃଖ ସହୁଛିରେ
ସହି ସହି ସେତ ପଥର ହେଲେଣି ତଳେ ତୋ ଚେତନା ନୋହୁଛି ରେ"

ଅବଶ୍ୟ ଗାନ୍ଧିଜୀ ୧୯୨୧ ମସିହାରେ ଓଡିଶାକୁ ପ୍ରଥମଥର ପାଇଁ ଆସିଥିଲେ । କେତେକ ନେତୃସ୍ଥାନୀୟ ଲୋକ ତାଙ୍କର ସଂସ୍ପର୍ଶରେ ଆସିଥିଲେ, ଗାନ୍ଧିଜୀ କିଏ, ସେ କାହିଁକି ସାରା ଭାରତରେ ସ୍ୱାଧୀନତା ଆନ୍ଦୋଳନର ତହଲ ପକାଇଛନ୍ତି, ଓଡ଼ିଶା ତଥା ସାରା ଭାରତର ଉଚ୍ଚ ଶିକ୍ଷିତ ନେତୃବର୍ଗ ଅନଳରେ ପତଙ୍ଗ ଲମ୍ଫ ଦେଲାଭଳି ନିଜର ସ୍ୱାର୍ଥକୁ ଜଳାଞ୍ଜଳି ଦେଇ କାହିଁକି ତାଙ୍କର ମୋହନ ମନ୍ତ୍ରରେ ଦୀକ୍ଷିତ ହୋଇଛନ୍ତି, ଏ ସମସ୍ତ ଓଡ଼ିଶାର ପ୍ରାୟ ଶତକଡା ୭୫ଜଣ ଜାଣି ନଥିଲେ । କିନ୍ତୁ ବାଞ୍ଛାନିଧି ବାବୁଙ୍କର ଉପରୋକ୍ତ କବିତା ଛଳରେ ତାଙ୍କର ତ୍ୟାଗ, ସାଧନା ଓ ସ୍ୱାଧୀନତା ପଥରେ ଅଗ୍ରଣୀ ରୂପକ କାର୍ଯ୍ୟାବଳୀ ବର୍ଣ୍ଣନା, ଗୋପବନ୍ଧୁଙ୍କର ନିର୍ଭୀକ ଓ ଓଜସ୍ୱିନୀ ଭାଷଣଦ୍ୱାରା ଜନସାଧାରଣରେ ଗାନ୍ଧିଜୀଙ୍କର ଆଲୌକିକ ସତ୍ୟନିଷ୍ଠ ଓ ଅହିଂସା ବାଣୀ ପ୍ରଚାର ଓ ସଂଗଠନ ଦ୍ୱାରା ସମଗ୍ର ଓଡ଼ିଆ ଜାତିର ହୃଦୟରେ ଏକ ଅଭିନବ ଜାଗରଣ ସୃଷ୍ଟି ହୋଇଥିଲା ।

ପ୍ରଥମ ଦିନର ସଭାକାର୍ଯ୍ୟ ଶେଷରେ ଆମେ ବସାକୁ ଫେରିଯାଇ ଥିଲୁଁ । ସଂଧ୍ୟାବେଳେ ଆମ ତିନି ପିଲାଙ୍କୁ ଏକସେଟ୍ ଲେଖାଏଁ ଖଦଡ ପୋଷାକ ତିଆରି କରି ଦେଇପିବାପାଇଁ ଗୋପବନ୍ଧୁ ବାବୁ କହିଲେ ଏବଂ ମାଷ୍ଟରଙ୍କ ସହିତ ଆମକୁ ନେଇ ବାଲୁବଜାରର ଗୋଟିଏ ସିଲେଇ ଦୋକାନରେ ମାପ ଦିଆଗଲା । ହିଁ ମଧୁସୂଦନ ହଲକୁ ଗୀତ ଗାଇବାକୁ ଯିବା ପୂର୍ବରୁ ଆମେ ଉକ୍ତ ପୋଷାକ ପିନ୍ଧି ଗୀତ ଗାଇବାପାଇଁ ଯାଇଥିଲୁ । ଏହି ପୋଷାକ ସଙ୍ଗରେ ଆମକୁ ଗୋଟିଏ ଲେଖାଏଁ ଲାଲ ଖଦଡ଼ ଫିତାର ଓସାରିଆ ବ୍ୟାଜ ମଧ୍ୟ ଦିଆ ଯାଇଥିଲା ।

ବିଶ୍ରାମ ଦିନ ସଭା ଆରମ୍ଭ ହେବାପରେ ଆମେ ଗୋଟିଏ ଉଦ୍‌-ବୋଧନ ସଙ୍ଗୀତ ଗାଇଥିଲୁ । ବିଶ୍ରାମ ଦିନ ସଭାରେ ମଧୁବାବୁଙ୍କର କେତେ-ଗୁଡ଼ିଏ ଝିଅ ଗାନ କରୁଥିଲେ । ଗୀତଗୁଡ଼ିକ ଖୁବ୍ ସୁନ୍ଦରଭାବେ ସେମାନେ ଗାଉଥିଲେ ଓ ସଭା ଶେଷ ପର୍ଯ୍ୟନ୍ତ ସେମାନେ ରହୁଥିଲେ ।

ଅସ୍ପୃଶ୍ୟତା ବର୍ଜନ ସମ୍ବନ୍ଧରେ ମାଷ୍ଟ୍ରେ ଆମକୁ ତଳଲିଖିତ ଗୀତଟି ଶିଖାଇଥିଲେ । ଶନିବାର ଦିନ ସଭାରେ ଆମେ ତାହା ଗାନ କରୁଥିଲୁ ।

''ଅଛୁଆଁ ଦୋଷ ମହାପାପକୁ ଉଠାଅ ଭାଇ
ଅଛୁଆଁ ଛୁଆଁ ଜାତି ପ୍ରମାଣ କାହିଁରେ ନାହିଁ ।
* * *
''ନିଜ ଭାଇଙ୍କୁ ସମାନ ଭାବେ ଦେଖିଲ ନାହିଁ
କେମନ୍ତେ ବିଦେଶୀ ଦାଖକର ସମତାପାଇଁ ।''

ଏଠାରେ ଆଉ ଗୋଟିଏ କଥା ଏକାନ୍ତ ଉଲ୍ଲେଖଯୋଗ୍ୟ । ଆମେ ଗୀତ ଗାଇବା ସମୟରେ ମାଷ୍ଟ୍ରେ ହାରମନିୟମ ବଜାନ୍ତି । କୃଷ୍ଣ ଚରଣ ସାହୁ ନାମକ ଜଣେ କର୍ମୀ ତବଲା ବଜାନ୍ତି । ମନମୋହନ ସାବତ ବେହେଲା ବଜାନ୍ତି । ଆଉଜଣେ କର୍ମୀ ବଂଶୀ ବଜାନ୍ତି । ପ୍ରତ୍ୟେକ ଯନ୍ତ୍ରର ସ୍ୱର ଓ ତାଳ ସହିତ ଆମ ଗଳାର ସ୍ୱର ଏପରି ମିଶିଯାଏ ଓ ଗୀତଗୁଡ଼ିକ ଦୂରକୁ ଏତେ ସୁନ୍ଦର ଓ ମଧୁର ଶୁଭାଏ ଯେ ତାହା ମୁଁ ଭାଷାରେ ପ୍ରକାଶ କରିପାରୁନାହିଁ । ମାଷ୍ଟ୍ରେ ଯେଉଁ ଶ୍ରେଷ୍ଠ ସିଙ୍ଗଲ ହାରମନିୟମଟି ବଜାନ୍ତି ତାର ସ୍ୱର ଏତେ ମଧୁର ଓ କୋମଳ ଏବଂ ମାଷ୍ଟ୍ରଙ୍କର ତାକୁ ବଜାଇବାର ଭଙ୍ଗୀ, ମୁଁ ମୋ ଜୀବନରେ ଏ ପର୍ଯ୍ୟନ୍ତ କେଉଁଠାରେ ଦେଖିବାକୁ ପାଉ-ନାହିଁ । ଅବଶ୍ୟ ମଧୁବାବୁଙ୍କ ଝିଅ ସବୁ ଗୀତ ଗାଉଥିବା ବେଳେ ତାଙ୍କ ଭିତରୁ ଗୋଟିଏ ଚେୟାର ଉପରେ ବସି ଗୋଡ଼ରେ ପେଡ଼େଲ କରି ଗୋଟିଏ ଖୁବ୍ ବଡ ହାରମନିୟମ ବଜାଉଥିଲେ । ପଡ଼ୁଥିଲା ବୁଝିଥିଲି ତାହା ପେଡ଼େଲ ହାରମନିୟମ । ଆଜକାଲି ପ୍ରାୟ ସେ ଯନ୍ତ୍ରଟି ଦେଖିବାକୁ ପାଉନାହିଁ । ଯେତେ ଯେ ଯାହା ବଜାଉ ନା କାହିଁକି, ମନମୋହନ ସାବତଙ୍କର ବେହେଲା ବଜାଇବାର ଦକ୍ଷତା ଓ ମାଷ୍ଟ୍ରଙ୍କର ହାରମନିୟମ ବଜାଇବାର ପରିପାଟି, ଯେ ଅନୁଭବ କରିଛି ସେ ଆଉ କେହି ବେହେଲା ବାଦକ ଓ ହାରମନିୟମ ବାଦକକୁ ଉଚ୍ଚସ୍ଥାନ ଦେଇ ପାରିବ ନାହିଁ

ଅନ୍ୟ ଦିନ ସଭାକାର୍ଯ୍ୟ ଶେଷ ହେବା ପରେ ଗୋପବନ୍ଧୁ ଦାଶ ସମସ୍ତ କର୍ମୀଙ୍କୁ ନେଇ ସହର ପରିଭ୍ରମଣର ପ୍ରସ୍ତାବ କଲେ । ମାଷ୍ଟ୍ରେ ଆମକୁ "ଉତ୍କଳ ବନ୍ଦନା" ଗୋଟିଏ ଶ୍ରେଷ୍ଠ ଗୀତ ଶିଖାଇ ଦେଇ ଥାଆନ୍ତି । ସନ୍ଧ୍ୟାବେଳେ ଶୋଭାଯାତ୍ରା ନେଇ ବାହାରିଥିଲୁ ।
ଏହି ଶୋଭାଯାତ୍ରାରେ ଆମେ ଗାଇଥିଲୁ—

"ଆସରେ ଆସରେ ସ୍ୱରାଜ ସୈନିକ ଆସ ବୀର ମୋଦେ ମାତି
ଇଂରେଜ ରାଜତ୍ୱ କରିଦେବା ଲୁପ୍ତ ଆମ୍ଭେ ଗଜପତି ଜାତି
ଅନ୍ଧ ସରକାର କ୍ରୋଧରେ ପାଗଳ
ହଜିଲାଣି ବୁଦ୍ଧି ସରିଲାଣି ବଳ
ତାର ଜ୍ଞାନ ଧ୍ୟାନ ହୋଇଲାଣି ଶୂନ୍ୟ ଧରିଣ ମାରିବା ନୀତି ।
ନାରୀକୂଳ ହୀରା ଦେଶୀ ସରୋଜିନୀ
ନାଗମାଣେ ଆଜ ହେଲେଣି ବନ୍ଦିନୀ
କମଳାଙ୍କ କେତେ ଭାରତର କନ୍ୟା ବନ୍ଦୀଶାଳେ ଷଡ଼୍ଯନ୍ତ୍ର ।
ଆମେରିକା ତେଣେ ଦେଲାଣି ଚିଟାଉ
ଅମୀତ ଅନଳ ଜଳାନାରେ ଆଉ
"ବନ୍ଦୀ ଗାନ୍ଧି ସଙ୍ଗେ ଶୀଘ୍ର ସନ୍ଧିକର ଅଛି ଯେବେ ଭଲ ଗତି"
ସୀତାଙ୍କୁ ହରିଲା ରାବଣ ମରିଲା
ଦ୍ରୌପଦୀ ଶାପରେ କୁରୁକୁଳ ଗଲା
ଏ ସର୍କାର ଆୟୁଷ ଦୁଇ ଚାରିମାସ ଯଦି ହୁଏ ବଡ଼ ଅତି ।'

ଏହିପରି ଭାବରେ ଆମର ଶୋଭାଯାତ୍ରା ସହର ପରିକ୍ରମା ସାରି ଫେରିଲା ବେଳକୁ ରାତି ପ୍ରାୟ ୧୨ଟାରୁ ବେଶି ହୋଇ ଯାଇଥିଲା । ଆଠଶହରୁ ଊର୍ଦ୍ଧ୍ୱ ଟଙ୍କା ପ୍ରଶେସନ ବେଳେ ମିଳିଥିଲା । ଏ ପ୍ରଶେସନ ଆଗରେ ଥିଲା ଚରଖା ଚିହ୍ନିତ ତିରଙ୍ଗା ପତାକା । ଆମେ ବାଞ୍ଛାନିଧିଙ୍କ ନିମ୍ନ କବିତା ଗାଇ ଗାଇ ପ୍ରଶେସନରେ ଚାଲିଥିଲୁ ।

"ରେ ପତାକା, ଜାତିର ଜୀବନ, ଜାତିର ଗୌରବ ପବନ ଭୁଜରେ
ଏକତା ପୀରତି, ଶାନ୍ତି ମୁକତି, ସୁନ୍ଦର ତୋହର ସମାନ କୋଳରେ

ତୋହର ଲାଗି କେତେ ଯେ ସମର
ଲଗିଛୁ ଜାଗିଛୁ ଭାରତ ଅମର
ତୋହର ଲାଗି କେତେ କାରାଗାର, ବସିଲେ,ମରିଲେ ସମର-
ଭୂଇଁରେ"

ତାଙ୍କର ଅଲୌକିକ ବକ୍ତୃତାର ପ୍ରଭାବରେ ମୋପରି କେତେ ଅଭଗା ସନ୍ତାନ ତାଙ୍କର ବିରାଟ ସୈନ୍ୟ ଦଳରେ ଯୋଗ ଦେଇଥିଲେ । ଆମେ ନିର୍ଭୀକ ଭାବେ ସାରା ଓଡ଼ିଶାରେ ଇଂରେଜ ଶାସକ ମାନଙ୍କ ଆଖି ଆଗରେ ଆଙ୍ଗୁଳି ହଲାଇ ଦେଶାତ୍ମବୋଧକ ପ୍ରଚାର କରିଥିଲୁ । ତାଙ୍କର ଇଙ୍ଗିତ ଓ ପ୍ରେରଣାରେ ଅନୁପ୍ରାଣିତ ହୋଇ ଦିନେ ମୁଁ ଓ ମୋର କେତେ ସ୍ୱରାଜ୍ୟ ସୈନିକଭାଇ ତତ୍କାଳୀନ ଇଂରେଜ ସୁପରିଂଟେଣ୍ଡେଣ୍ଟଙ୍କ ଆଗରେ ଗାଇ ଉଠିଥିଲୁଁ—"ସାରା ଭାରତରେ ହା ହାକାର ଆମ୍ଭେ ପକାଇ ଦେବୁଁ-ପକାଇ ଦେବୁଁ-ଏ ଗୋରା ବେପାରୀଙ୍କୁ ଏପାରି ସେପାରି ନଚାଇ ଦେବୁଁ । ବିଲାତି ମଦର, ବିଲାତି ପିକା, ଘଡ଼ି ଶୁନଗାଡ଼ି ଟାଣଇଁ ଟଙ୍କା, ଟାଣଇ ଟଙ୍କା-ତାଙ୍କ ବନ୍ଧି ପଣ ଆଜ ଉଠାଇ ଦେବୁଁ-ଉଠାଇ ଦେବୁଁ ।। ଆମ୍ଭର ପୋଲିସ୍ ଆମ୍ଭ କଚେରୀ, ଆମ ଭାଇମାନେ ଅଛନ୍ତି ଘେରି, ଅଛନ୍ତି ଘେରି ।"

———



# ଜାତୀୟକବି ବାଞ୍ଛାନିଧିଙ୍କ ସ୍ଥୂଳ ଜୀବନୀ

● ଶ୍ରୀ ପରୀକ୍ଷିତ ନନ୍ଦ ଏମ୍. ଏ.
● ଶ୍ରୀ ମନୀନ୍ଦ୍ର ମହାନ୍ତି ଏମ୍.ଏ.

ଜାତୀୟକବି ବାଞ୍ଛାନିଧି ମହାନ୍ତି କେବଳ ଜଣେ କବି ନୁହନ୍ତି, ନେତା, କର୍ମୀ, ସୁଗାୟକ ଓ ସୁଦକ୍ଷ ଅଭିନେତା ଥିଲେ । ତାଙ୍କ ଲେଖାରେ ବିଦ୍ରୋହର ଅଗ୍ନି ସ୍ଫୁଲିଙ୍ଗ ପ୍ରକାଶ ପାଇଥିଲା । ଜନତାର ଅନ୍ତରାତ୍ମାରେ ନବଜାଗରଣ ସୃଷ୍ଟି ପାଇଁ ତାଙ୍କର ପ୍ରାୟ ପ୍ରତ୍ୟେକଟି ସଂଗୀତ ଉଦ୍ଦିଷ୍ଟ । ତେଣୁ ସେହି ଉତ୍କଳବାସୀମାନେ ଆଜ ତାଙ୍କୁ ଜାତୀୟକବି ଆଖ୍ୟାରେ ଭୂଷିତ କରିଛନ୍ତି ।

**ଜନ୍ମ ଓ ଶୈଶବାବସ୍ଥା** --ବଙ୍ଗୋପସାଗର କୂଳସ୍ଥ ବାଲେଶ୍ୱର ଜିଲ୍ଲା ଅନ୍ତର୍ଗତ ବାସୁଦେବପୁର ଥାନାରେ 'ଇରମ' ଗ୍ରାମରେ ଖ୍ରୀ:ଅ: ୧୮୯୭ ଏପ୍ରିଲ ୨୦ ତାରିଖରେ ଜାତୀୟକବି ବାଞ୍ଛାନିଧି ମହାନ୍ତିଙ୍କ ଜନ୍ମ । ତାଙ୍କର ପୂର୍ବବଂଶ ପ୍ରସଙ୍ଗରେ ଏତିକିମାତ୍ର କୁହାଯାଇପାରେ ଯେ—ପଦ୍ମଚରଣଙ୍କର ଦୁଇପୁତ୍ର ଥିଲେ-ସନାତନ ମହାନ୍ତି ଓ ଚିନ୍ତାମଣି ମହାନ୍ତି । ସନାତନ ମହାନ୍ତି ଥିଲେ ନିଃସନ୍ତାନ, କିନ୍ତୁ ଚିନ୍ତାମଣି ଥିଲେ ଚାରୋଟି ପୁତ୍ରଙ୍କ ପିତା । ଏହି ଚାରିପୁଅ ଯଥାକ୍ରମେ ହେଲେ—ଜନକବି ୰ବାଞ୍ଛାନିଧି, ପ୍ରେମାନନ୍ଦ ମହାନ୍ତି, ବିବେକା ନନ୍ଦ ମହାନ୍ତି ଓ ଶ୍ରଦ୍ଧାନନ୍ଦ ମହାନ୍ତି । ବାଞ୍ଛାନିଧିଙ୍କ ମାତାଙ୍କ ନାମ ସାବିତ୍ରୀ ଦେଈ । ପିତା ଚିନ୍ତାମଣି ମହାନ୍ତି ଇରମର ତତ୍କାଳୀନ ଜମିଦାର ନୀଳମାଧବ ପାଢ଼ୀଙ୍କ ଜମିଦାରୀ ଉଆସରେ ସ୍ୱଳ୍ପ ବେତନଭୋଗୀ ସାମାନ୍ୟ ଜଣେ ଗୁମାସ୍ତା ଥିଲେ । ସେ ଥିଲେ ଯେପରି ଧର୍ମାତ୍ମା, ସେହିପରି ନ୍ୟାୟବନ୍ତ ପୁରୁଷ । ଏକ ଅନ୍ୟାୟ କାର୍ଯ୍ୟ କରିବାକୁ ତାଙ୍କୁ ବାଧ୍ୟ କରାଯିବାରୁ ସେ ନିଜ ସ୍ୱଇଚ୍ଛାରେ ଚାକିରୀରୁ ଇସ୍ତଫା

ଦେଲେ ଓ ପରବର୍ତ୍ତୀ ଜୀବନରେ ସେ ଭଦ୍ରକ କଚେରୀରେ ମୋକ୍ତାର ହେଲେ ।

ବାଞ୍ଛାନିଧିଙ୍କର ଯେତେବେଳେ ୮।୯ବର୍ଷ ବୟସ, ସେତେବେଳେ ତାଙ୍କର ମାତା ସାବିତ୍ରୀ ଦେଈ ଇହଲୀଳା ସମ୍ବରଣ କରିଥିଲେ । ସାନପୁଅ ପ୍ରେମାନନ୍ଦଙ୍କ ବୟସ ୭।୮ବର୍ଷ ହେବ । ତେଣୁ ସେମାନଙ୍କର ଲାଳନ-ପାଳନ ପାଇଁ ଏବଂ ପରିବାରର ସ୍ଥିତି ପାଇଁ ତାଙ୍କୁ ୨ୟ ବିବାହ କରିବାକୁ ପଡ଼ିଥିଲା । ଏହି ୨ୟ ପତ୍ନୀଙ୍କ ନାମ କୁଞ୍ଜଲତା ଦେବୀ । ସେ ବିମାତା ହେଲେ ମଧ୍ୟ ବାଞ୍ଛାନିଧିଙ୍କୁ ନିଜ ସନ୍ତାନଠାରୁ ଅଧିକ ସ୍ନେହ କରୁଥିଲେ ବୋଲି ଶୁଣାଯାଏ ।

ବାଞ୍ଛାନିଧି ଜନ୍ମସ୍ଥାନ ଇରମରେ ଚାଟଶାଳୀ ପାଠ ଶେଷ ପରେ ଭଦ୍ରକ ଗଲେ ଓ ଭଦ୍ରକରେ ବାପାଙ୍କ ପାଖରେ ରହି ଭଦ୍ରକ ହାଇ-ସ୍କୁଲରେ ଅଧ୍ୟୟନ କଲେ । ପିତାଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରେ ବାଞ୍ଛାନିଧି ବହୁ ପରିମାଣରେ ପ୍ରଭାବିତ ହୋଇଥିଲେ ।

**ସ୍କୁଲଶିକ୍ଷା**—ଭଦ୍ରକ ହାଇସ୍କୁଲରେ ମେଟ୍ରିକ ଅଧ୍ୟୟନ ସମୟରେ ତାଙ୍କର ଘନିଷ୍ଠ ବନ୍ଧୁ ଥିଲେ ବୈଷ୍ଣବ ଚରଣ ଦାସ, ଯେ କି ପରବର୍ତ୍ତୀ କାଳରେ ଜଣେ ପ୍ରଖ୍ୟାତ ଔପନ୍ୟାସିକ ରୂପେ ପରିଚିତ ହେଲେ । ଦୁହେଁ ମିଶି ଲୁଚି ଲୁଚି ସଙ୍ଗୀତଗାନ ଅଭ୍ୟାସ କରୁଥାନ୍ତି । ଜନସେବା ମନୋବୃତ୍ତି ତାଙ୍କଠାରେ ଏବେଠାରୁ ପରିଦୃଷ୍ଟ ହୋଇଥିଲା । ନିଜ ବାସଗୃହ ସମ୍ମୁଖସ୍ଥ ଆମ୍ବଗଛରେ ଚିଠି ବାକ୍ସଟିଏ ଝୁଲାଇ ଦେଇଥାନ୍ତି । ଏଥିରେ ଗ୍ରାମବାସୀ ଚିଠି ପକାନ୍ତି ଏବଂ ପ୍ରତ୍ୟହ ଛୁଟିପରେ ବାଞ୍ଛାନିଧି ଦୂରସ୍ଥ ଡାକଘରେ ସମସ୍ତ ଚିଠି ନେଇ ଦେଇଆସନ୍ତି । ୧୬ବର୍ଷ ବୟସରେ ବାଞ୍ଛାନିଧି ୨ୟ ଶ୍ରେଣୀରେ ମେଟ୍ରିକ୍ ପାଶ୍‌କଲେ ।

**କଲେଜ ଶିକ୍ଷା**—୧୯୧୧ରେ ମେଟ୍ରିକ ପାଶ୍ ପରେ ସେ ଉଚ୍ଚଶିକ୍ଷା ପାଇଁ ଓଡ଼ିଶାର ଏକମାତ୍ର କଲେଜ 'ରେଭେନ୍‌ସା କଲେଜ'ରେ ଅଧ୍ୟୟନ କଲେ । କଲେଜ ହଷ୍ଟେଲରେ ରହି ସେ ପଢ଼ୁଥିଲେ । ଏହି ସମୟରେ ତାଙ୍କର ଅନ୍ତରଙ୍ଗ ବନ୍ଧୁ ଥିଲେ—କନିକା ଭଞ୍ଜ ଗୁରୁ ୮କୃଷ୍ଣପ୍ରସାଦ

ବନ୍ଧୁ । କାରଣ ସେ ଜଣେ ସଂଗୀତପ୍ରେମୀ ଥିଲେ । ତେଣୁ ଦୁହିଁଙ୍କ ମଧ୍ୟରେ ଆନ୍ତରିକତା ଘନିଷ୍ଠ ହୋଇ ଆସିଲା । ଆଇ.ଏ. ୧ମ ଶ୍ରେଣୀରେ ଉତ୍ତୀର୍ଣ୍ଣ ପରେ ବି.ଏ. ପଢ଼ିଲେ ।

ସେତେବେଳେ ସେ ବି.ଏ. ର ଶେଷବର୍ଷର ଛାତ୍ର କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ଗହଣରେ ପ୍ରଥମ ଓଡ଼ିଆ ନାଟକ 'କାଞ୍ଚିକାବେରୀ' ଅଭିନୟ କରିଥିଲେ । ସେତେବେଳେ ପଣ୍ଡିତ ଗୋପବନ୍ଧୁ ଦାସ ରେଭେନ୍ସା କଲେଜରେ ସଭାସମିତିମାନ ଅନୁଷ୍ଠିତ କରି ସତ୍ୟବାଦୀ ବନବିଦ୍ୟାଳୟପାଇଁ ତଥା ସ୍ୱାଧୀନତା ଆନ୍ଦୋଳନ ପାଇଁ ଅନ୍ୱେଷଣରେଥିଲେ । ବାଞ୍ଛାନିଧିଙ୍କ ସରଳ, ନିଷ୍କପଟ ହୃଦୟ ଗୋପବନ୍ଧୁଙ୍କୁ ଆକର୍ଷଣ କରିଥିଲା ।

**ବୈବାହିକ ଜୀବନ**—କବି ବାଞ୍ଛାନିଧି ୧୯୧୬ ଜୁଲାଇମାସର ଶେଷ ଭାଗରେ ବିବାହ କରିଥିଲେ । ସୋର ନିକଟବର୍ତ୍ତୀ ଅନନ୍ତପୁର ଗ୍ରାମସ୍ଥ ରାଧାନାଥ ଦାସ ପଟ୍ଟନାୟକଙ୍କ ଜ୍ୟେଷ୍ଠାକନ୍ୟା ହେମଲତା ଦେବୀଙ୍କୁ ବିବାହ କରିଥିଲେ । ବାଞ୍ଛାନିଧି ବିବାହ କରିବାକୁ ରାଜିନଥିଲେ । କାରଣ ସାଂସାରିକ ଜଞ୍ଜାଳ ମଧ୍ୟରେ ଆବଦ୍ଧ ହେଲେ ନିର୍ଭୀକ ଭାବରେ ଦେଶସେବା କରିବାପାଇଁ ସୁଯୋଗ ମିଳିପାରିବ ନାହିଁ । ତେଣୁ ସେ ମନସ୍ଥ କରିଥିଲେ ଚିରକୁମାର ବ୍ରତ ପାଳନ କରିବାକୁ । ମାତ୍ର ପିତା ଓ ବନ୍ଧୁବର୍ଗଙ୍କ ଚାପରେ ବିବାହ କରିବାକୁ ବାଧ୍ୟହେଲେ । ସେ ଯୌତୁକପ୍ରଥା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ମାତ୍ର ଇରମସ୍ଥ 'ରାଧାମୋହନ ଥିଏଟର ପାର୍ଟି'ର ପୁନର୍ଜନ୍ମପାଇଁ ଗୋଟିଏ ଘଙ୍ଗାଏଣ୍ଡର ବିଭିନ୍ନ ଉପକରଣ ସ୍କ୍ରୀନ୍, ସିନ୍ ଇତ୍ୟାଦି ଦାବୀ କରିଥିଲେ ଶ୍ୱଶୁରଙ୍କ ନିକଟରେ । ଏଥିରେ ଶ୍ୱଶୁର ସ୍ୱର୍ଗତଃ ଦାସ ପଟ୍ଟନାୟକ ମଧ୍ୟ ସମ୍ମତ ହୋଇଥିଲେ । ବିବାହର ଚତୁର୍ଥୀଠାରୁ ନବନିର୍ମିତ ପ୍ରେକ୍ଷାଳୟରେ ନିୟମିତ ଅଭିନୟ କିଛିକାଳ ଚାଲିଲା । ବାଞ୍ଛାନିଧି ଏଥିରେ ନିଜେ ମଧ୍ୟ ଅଭିନୟ କରୁଥିଲେ । ତାଙ୍କର ଗୋଟିଏ କନ୍ୟା ଓ ଗୋଟିଏ ପୁତ୍ର । କନ୍ୟା ଜ୍ୟେଷ୍ଠା ଓ ପୁତ୍ର କନିଷ୍ଠ । କନ୍ୟାର ନାମ ବାସନ୍ତଲତା ମହାନ୍ତି ଓ ପୁତ୍ରର ନାମ ଯଜ୍ଞାନ୍ଦ ମୋହନ ମହାନ୍ତି । ସେ ସରକାରୀ ଚାକିରୀ ବର୍ତ୍ତମାନ ଛାଡ଼ି ଭଦ୍ରକରେ ଓକିଲାତି କରୁଛନ୍ତି ।

ଗଣକବ ବାଞ୍ଛାନିଧି ପ୍ରଥମଥର ବି.ଏ. ରେ ଅକୃତକାର୍ଯ୍ୟ ହେବାର କାରଣ ହେଲା—ତାଙ୍କର ଅଭିନୟ ଓ ସଂଗୀତ ନିଶା । ପରେ ବି.ଏ. ପାଶ୍ କଲେ । ସେ କିଛିକାଳ ଭଦ୍ରକ ହାଇସ୍କୁଲରେ ଶିକ୍ଷକତା ପରେ ଚରଂପା ସର୍ଭେ ଟ୍ରେନିଂ ସ୍କୁଲରେ ଶିକ୍ଷକତା କରିଥିଲେ । ପରେ 'ଲ' ମଧ୍ୟ ପାଶ୍ କରିଥିଲେ ।

**ବୈପ୍ଳବିକ ଜୀବନର ଶୁଭାରମ୍ଭ**—୧୯୨୧ରେ ମହାତ୍ମା ଗାନ୍ଧିଙ୍କର ଅସହଯୋଗ ଆନ୍ଦୋଳନର ଆହ୍ୱାନରେ ସମଗ୍ର ଭାରତବର୍ଷ ଚେଇଁଉଠିଲା । ଭାରତର ବିଭିନ୍ନ ପ୍ରାନ୍ତରେ ଗାନ୍ଧିଙ୍କର ସ୍ୱାଧୀନତା ବାର୍ତ୍ତା ପ୍ରତିଧ୍ୱନିତ ହେବାକୁ ଲାଗିଲା । ଉତ୍କଳଖଣ୍ଡରେ ମହାତ୍ମାଗାନ୍ଧିଙ୍କ ଆହ୍ୱାନକୁ ଫଳବତୀ କରିବାପାଇଁ ଶପଥ ନେଇ ନେତୃତ୍ୱ ନେଲେ—ପଣ୍ଡିତ ଗୋପବନ୍ଧୁ ଦାସ ତାଙ୍କର ସେହି ନେତୃତ୍ୱକୁ ବଳିଷ୍ଠ କରିବାପାଇଁ ଯେଉଁ କେତେଜଣ କର୍ମବୀର ସ୍ୱଦେଶୀ ବସ୍ତ୍ର ସ୍ୱାଧୀନତା ପ୍ରାପ୍ତିର ଆଗ୍ରହ ଶପଥ ନେଇ ନିଜର ସମସ୍ତ ବ୍ୟକ୍ତିଗତ ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ସେହି ଆସହଯୋଗ ଆନ୍ଦୋଳନର ସ୍ରୋତରେ ଲମ୍ଫ ପ୍ରଦାନ କରିଥିଲେ, ସେଥିମଧ୍ୟରୁ ଜାତିପ୍ରକବି ବାଞ୍ଛାନିଧି ଅନ୍ୟତମ ।

୧୯୨୧ ମାର୍ଚ୍ଚମାସ ୩ତାରିଖ ତାଙ୍କ ଜୀବନର ଏକ ଗୁରୁତ୍ୱପୂର୍ଣ୍ଣ ଦିବସ । ସେହି ଦିନଠାରୁ ସେ ମହାତ୍ମାଗାନ୍ଧିଙ୍କ ଅସହଯୋଗ ଆନ୍ଦୋଳନରେ ପୂର୍ଣ୍ଣତଃ ନିମଜ୍ଜିତ ହୋଇ ରହିଲେ । ତାହାର ୩ ଦିନ ପରେ ମାର୍ଚ୍ଚ ୭ତାରିଖରେ ନିଜ ଜନ୍ମସ୍ଥାନ ଇରମସ୍ଥ ମେଲଣ ପଡ଼ିଆରେ ବାଞ୍ଛାନିଧି ଏକ ସାଧାରଣ ସଭାର ଆୟୋଜନ କରିଥିଲେ । ତାଙ୍କର ଉଦ୍ଦେଶ୍ୟ ଥିଲା—ଜନ୍ମପୀଠରୁ ବିପ୍ଳବ ଆରମ୍ଭ କରିବା । ପରେ ପରେ ଉତ୍କଳମଣି ଗୋପବନ୍ଧୁ, ହରେକୃଷ୍ଣ ମହତାବ, ଗୋପବନ୍ଧୁ ଚୌଧୁରୀ ଆଦିଙ୍କୁ ନେଇ ସେଇ ଇରମ ସିଦ୍ଧହାଟରେ ବିରାଟ ସାଧାରଣ ସଭାମାନ ଅନୁଷ୍ଠିତ କରାଇ ଜନତା ମଧ୍ୟରେ ସ୍ୱାଧୀନତାର ବର୍ତ୍ତିକା ପ୍ରଜ୍ୱଳିତ କରାଇଲେ । ଏହାପରେ ତାଙ୍କର କର୍ମକ୍ଷେତ୍ର ହେଲା ସମଗ୍ର ଉତ୍କଳଖଣ୍ଡ ।

**ମହାତ୍ମାଗାନ୍ଧି ଓ ବାଞ୍ଛାନିଧି**—୧୯୨୧ ଏପ୍ରିଲ୍ ୨ୟ ସପ୍ତାହରେ ମହାତ୍ମାଗାନ୍ଧି ଆସି ଭଦ୍ରକସ୍ଥ ନୂଆବଜାର ସ୍ଥିତ ଏବର ଗୀନ୍ଧପଡ଼ିଆରେ

ସଭା କରିଥିଲେ । ଏହି ସଭାରେ ଂବାଞ୍ଛାନିଧି ମହାତ୍ମାଗାନ୍ଧିଙ୍କୁ ପ୍ରଶ୍ନ କରିଥିଲେ —"ଯଦି ଅସ୍ପୃଶ୍ୟତା ଉଠିଯିବ ତେବେ 'ବର୍ଣ୍ଣାଶ୍ରମ ଧର୍ମ'ରେ ବାଧା ପଡ଼ିବ କି ନା ?" ଗାନ୍ଧି ସିଂ ତହିଁର ଏହାର ଉତ୍ତରରେ କହିଥିଲେ —"ବର୍ଣ୍ଣାଶ୍ରମ ଧର୍ମରେ କୌଣସି ଅସୁବିଧା ହେବନାହିଁ । କର୍ମ ଗୁଡ଼ିକ ସୁବ୍ୟବସ୍ଥିତ ଭାବରେ ସମ୍ପାଦିତ ହେବାପାଇଁ ବର୍ଣ୍ଣାଶ୍ରମ ଧର୍ମର ସୃଷ୍ଟି । କିନ୍ତୁ ଜାତି ଜାତି ମଧ୍ୟରେ ପ୍ରଭେଦକୁ ନେଇ ଅନ୍ୟାୟ ଉଠିଥିଲା ।"

ଉପ୍ରୋକ୍ତ ବଙ୍ଗ ସାହିରେ ବାଞ୍ଛାନିଧିଙ୍କ ବାସଭବନରେ ୧୯୨୧ ଠାରୁ ୧୯୨୨ ପର୍ଯ୍ୟନ୍ତ ଭଦ୍ରକ ସବ୍‌ଡିଭିଜନର କଂଗ୍ରେସକର୍ମୀ ଆଶ୍ରମ ପ୍ରତିଷ୍ଠିତ ହୋଇଥିଲା । ପରେ ବଂଶୀଧର ଦାସ ଏବଂ ପରେ ହାଜିନ୍ଦୀ କୂଳସ୍ଥ କୁଆଁସ ଗ୍ରାମରେ ଶ୍ରୀ ଗୌରମୋହନ ମହାପାତ୍ରଙ୍କ ଦାନରେ ସ୍ଥାୟୀ କଂଗ୍ରେସ ଅଫିସ ସ୍ଥାପିତ ହେଲା ।

ଉତ୍କଳମଣି ଗୋପବନ୍ଧୁ ଓ କର୍ତ୍ତବ୍ୟନିଷ୍ଠ ବାଞ୍ଛାନିଧି— ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠନ ପାଇଁ ସେ ଗୋପବନ୍ଧୁଙ୍କର ଅତି ପ୍ରିୟ ପାତ୍ର ହୋଇପାରିଥିଲେ । ଓଡ଼ିଶାର ବିଚ୍ଛିନ୍ନାଂଚଳକୁ ଏକତ୍ର କରିବାପାଇଁ ସେ ଗୋଦାବରୀଶ ମିଶ୍ର, ମଧୁସୂଦନ ସାମଲ ଓ ପଦ୍ମମଣି ମଙ୍ଗରାଜ ଆଦିଙ୍କ ଗହଣରେ ମେଦିନୀପୁର, ଫୁଲଝର, ସିଂହଭୂମି ପ୍ରଭୃତି ଅଂଚଳରେ ବହୁ ବାଧାବିଘ୍ନ ମଧ୍ୟରେ ସଭାସମିତିମାନ ଅନୁଷ୍ଠିତ କରିଥିଲେ । ବିଭିନ୍ନ ସମ୍ମିଳନୀ ଓ ଅଧିବେଶନରେ ସେ ଗୋପବନ୍ଧୁଙ୍କର ଘନିଷ୍ଠ ହୋଇ ଆସିଲେ ।

ଗୋପବନ୍ଧୁଙ୍କ ସହିତ ସେ ଅନେକଥର ବନ୍ୟାସମୟରେ ନୌକାରେ ଭ୍ରମଣକରି ବିପନ୍ନ ଲୋକମାନଙ୍କୁ ଚୂଡ଼ା, ଗୁଡ଼ଲ, ଲୁଗା ଆଦି ବିତରଣ କରୁଥିଲେ । ପ୍ରାୟ ପ୍ରତ୍ୟେକ କ୍ଷେତ୍ରରେ ସେ ଗୋପବନ୍ଧୁଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ତାଙ୍କୁ ଗ୍ରହଣ କରିଛନ୍ତି ।

ବାଞ୍ଛାନିଧି ମହାନ୍ତି ବ—ଜବ ବାଞ୍ଛାନିଧି ଭଦ୍ରକ ହାଇସ୍କୁଲରେ ଶିକ୍ଷକତା କରୁଥିବା ସମୟରେ ହରେକୃଷ୍ଣ ମହତାବ ତାଙ୍କର ଛାତ୍ରଥିଲେ । ମାତ୍ର ୧୯୨୧ରେ ଅସହଯୋଗ ଆନ୍ଦୋଳନରେ ଦୁହିଙ୍କ ସମ୍ପର୍କ ଛାତ୍ର ଓ ଶିକ୍ଷକ ସ୍ତରରୁ ସହକର୍ମୀ ସ୍ତରକୁ ଉନ୍ନୀତ ହେଲା ।

ବାଞ୍ଛାନିଧି ଉତ୍କଳ ସବ୍‌ଡ଼ିଭିଜନର କଂଗ୍ରେସ ଆଶ୍ରମରେ ନେତୃତ୍ୱ ନେଲାବେଳେ ମହତାବବାବୁଙ୍କୁ ସାହାଯ୍ୟ କରୁଥିଲେ । ତତ୍‌କାଳୀନ ପ୍ରବୀଣ ଆଇନ୍‌ଜୀବୀ ଚୌଧୁରୀ ଭଗବତୀ ପ୍ରସାଦ ଦାସ ମହାପାତ୍ରଙ୍କୁ ପରାଜୟ କରି ପାଟନା କାଉନ୍‌ସିଲର ହରେକୃଷ୍ଣ ମହତାବ ସଭ୍ୟ ହେବାରେ ବାଞ୍ଛାନିଧିଙ୍କର ଉଦ୍ଦାମ ସଙ୍ଗୀତ ଓ ଜ୍ୱାଳାମୟୀ ଭାଷଣ ବିଶେଷ ସହାୟକ ହୋଇଥିଲା ।

**ଡ଼ାକ୍ତର ଅଟଳବିହାରୀ ଆଚାର୍ଯ୍ୟ ଓ ଚାରଣକବି ବାଞ୍ଛାନିଧି**—ବିଭିନ୍ନ ସମ୍ମିଳନୀରେ ଦୁହିଁଙ୍କ ସମ୍ପର୍କ ଘନିଷ୍ଠ ହୋଇ ଆସିଲା । ଭିଷକ ଆଚାର୍ଯ୍ୟ ଓଡ଼ିଶା କାଉନ୍‌ସିଲ୍‌ର ସଦସ୍ୟ ପାଇଁ ଯେତେବେଳେ ଜମିଦାର ଗୋପ ମିଶ୍ରଙ୍କୁ ପ୍ରତିଦ୍ୱନ୍ଦ୍ୱିତା କରୁଥିଲେ, ସେତେବେଳେ ବାଞ୍ଛାନିଧିଙ୍କ ସଙ୍ଗୀତ ଓ ବକ୍ତୃତା ଯାହା ଅସମ୍ଭବ ତାକୁ ସମ୍ଭବ କରାଇ ପାରିଥିଲା । ଆଚାର୍ଯ୍ୟ ବିଜୟ ଲାଭକଲେ । ତାପରେ ଦୁହିଁଙ୍କ ସମ୍ପର୍କ ଘନିଷ୍ଠ ହୋଇଆସିଲା ।

**ନବକୃଷ୍ଣ ଓ ବାଞ୍ଛାନିଧି**—କଟକର କଂଗ୍ରେସ ସମ୍ମିଳନୀରେ ଦୁହିଁଙ୍କ ମଧ୍ୟରେ ଘନିଷ୍ଠତା ବଢ଼ିଥିଲା । ବିଶେଷତଃ ନବକୃଷ୍ଣ ଚୌଧୁରୀ ଯେତେବେଳେ କଂଗ୍ରେସ ପକ୍ଷରୁ ବିଧାନସଭା ପାଇଁ ସୁକିନ୍ଦାର ପ୍ରଭାବଶାଳୀ ମାନେଜର ଗୋବିନ୍ଦବାବୁଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କଲେ, ସେତେବେଳେ ବାଞ୍ଛାନିଧିଙ୍କ ଜାତୀୟ ସଙ୍ଗୀତ ଓ ବକ୍ତୃତା ତାଙ୍କୁ ବିଜୟୀ କରିବାରେ ବିଶେଷ ସହାୟକ ହୋଇଥିଲା । ପରେ ଦୁହିଁଙ୍କ ସମ୍ପର୍କ ଅଧିକ ଘନିଷ୍ଠ ହୋଇଥିଲା ।

**ଗୋପବନ୍ଧୁ ଚୌଧୁରୀ ଓ ଆଶୁକବି ବାଞ୍ଛାନିଧି**—କନିକାରେ ରାଜାଙ୍କ ଅତ୍ୟାଚାର ଚାଲିଥିଲା ବେଳେ ଏହାର ପ୍ରତିକାର ପାଇଁ ଦୁହିଁଙ୍କ ମଧ୍ୟରେ ଘନିଷ୍ଠତା ବୃଦ୍ଧି ହେଲା । ବିଭିନ୍ନ ସମ୍ମିଳନୀ ଓ ଅଧିବେଶନରେ ଦୁହିଁଙ୍କ ମଧ୍ୟରେ ସମ୍ପର୍କ ଅଧିକ ନିକଟ ହୋଇ ଆସିଲା । ଏତିକାଳରେ ଜମିଦାର ରାୟବାହାଦୂର ଭାସ୍କରଚନ୍ଦ୍ର ଭୂୟାଁ ମହାପାତ୍ର କୃଷ୍ଣପୁରରେ ଦରିଦ୍ର ଗୋପାଳ ପ୍ରଜାମାନଙ୍କ ଉପରେ ଯେଉଁ ଅକଥନୀୟ ଅତ୍ୟାଚାର ଆରମ୍ଭ କରିଥିଲେ, ତା'ର ମୂଳୋଚ୍ଛେଦ ଚାହିଁଥିଲେ ବାଞ୍ଛାନିଧି ଓ

ଗୋପବନ୍ଧୁ ଚୌଧୁରୀ । ବାଞ୍ଛାନିଧି ଗୋପବନ୍ଧୁଙ୍କୁ ଟେଲିଗ୍ରାମ୍ କରି ଡକାଇଥିଲେ । ଗୋପବନ୍ଧୁ ଚୌଧୁରୀ ଆସି ଏହି ଅମାନୁଷିକ ଅତ୍ୟାଚାରର ବିବରଣୀ ଆଣି ଏହାର ପ୍ରତିକାର କରିଥିଲେ ।

ସ୍ୱଦେଶୀ ବସନ ବର୍ଜନ ଏବଂ ଲବଣ ସତ୍ୟାଗ୍ରହ ଦିଗରେ ବାଞ୍ଛାନିଧିଙ୍କ ଦାନ ଅପରିସୀମ । ଲବଣ ସତ୍ୟାଗ୍ରହରେ ନିଜେ ଜେଲ ଯାଇଥିଲେ । ମାଷ ଶ୍ୱଶୁରଙ୍କର ଟଙ୍କା ଜମାରେ ତାଙ୍କୁ ଛାଡ଼ିଦିଆଗଲା । ସେ ନିଜ ମାତାଙ୍କ ମୁଣ୍ଡରେ ଲୁଣ ଟୋକେଇ ଧରେଇଦେଇ ସମୁଦ୍ର-କୂଳକୁ ନାରୀସେନାଙ୍କ ଭାବରେ ପଠାଇ ଦେଇଥିଲେ ।

**ନାଟ୍ୟପ୍ରେମୀ ବାଞ୍ଛାନିଧି**—ଜନ୍ମସ୍ଥାନ ଇରମରେ ବାଞ୍ଛାନିଧିଙ୍କ ପ୍ରଚେଷ୍ଟାରେ ଏକ ଥିଏଟର ପାର୍ଟି ଗଠନ କରାଯାଇଥିଲା । ଏଥିରେ ଅନନ୍ୟ ରାଧାକାନ୍ତ ପତ୍ରୀ ଓ ମୁକ୍ତିକାନ୍ତ ପତ୍ରୀ ପୃଷ୍ଠପୋଷକତା କରୁଥିଲେ । ସୀତା ବିବାହ, ସୀତାପରୀକ୍ଷା, ମମତାଲିଶ୍ରୀ ଆଦି ନାଟକ-ମାନ ଅଭିନୀତ ହେଉଥିଲା ଏହି ଥିଏଟର ପାର୍ଟିରେ । ନାରୀ ଭୂମିକାରେ ବାଞ୍ଛାନିଧି ଅଭିନୟ କରି ବହୁ ସ୍ୱର୍ଣ୍ଣପଦକ ପୁରସ୍କାର ଲାଭ କରିଥିଲେ ।

ତାଙ୍କ ବିବାହ ଉପଲକ୍ଷେ ରାଧାମୋହନ ଥିଏଟର ପାର୍ଟିରେ 'ନନ୍ଦକେଶରୀ' ଓ 'ଅହଲ୍ୟା' ନାଟକମାନ ଅଭିନୀତ ହେବାକୁ ଲାଗିଲା । ଭଦ୍ରକ ନିକଟସ୍ଥ ମଥୁରାପୁରରେ ଏକ ଅପେରାପାର୍ଟି ଥିଲା । ଏହାକୁ ଥିଏଟର ପାର୍ଟିରେ ପରିଣତ କଲେ ବାଞ୍ଛାନିଧି । ବନ୍ଧୁ ଗୌରାଙ୍ଗ ଚନ୍ଦ୍ର ଦାସ ଏହାର ନିର୍ଦ୍ଦେଶନା ଦାୟିତ୍ୱରେ ରହିଲେ ଓ ନିଜେ ପରିଚାଳନା ଦାୟିତ୍ୱରେ ରହିଲେ । ଓଡ଼ିଶା ଓ ଓଡ଼ିଶା ବାହାରେ ବହୁସ୍ଥାନ ବୁଲି ସେମାନେ ଅଭିନୟ ପ୍ରଦର୍ଶନ କରିଥିଲେ । ମାତୃପୂଜା, ମହିଷାସୁର ବଧ, କୋଣାର୍କ, ରାମବନବାସ, ଧ୍ରୁବ ଆଦି ନାଟକମାନ ଏହି ରଙ୍ଗମଞ୍ଚରେ ଅଭିନୀତ ହେଉଥିଲା । ବାଞ୍ଛାନିଧି ଯେତେବେଳେ ଧର୍ମୀୟ ନାଟକାଦିରେ ବ୍ୟସ୍ତ ରହି ତାହାର ମାଧ୍ୟମରେ ଜାତୀୟ ଚେତନା ସୃଷ୍ଟି କରୁଥିଲେ, ସେତେବେଳେ ତାଙ୍କର ବୃଦ୍ଧ ପିତାଙ୍କ ଦୁଃଖ କହିଲେ ନସରେ । ପିତାଙ୍କର ଲକ୍ଷ୍ୟ ଥିଲା ବାଞ୍ଛାନିଧି ଓକିଲ ହେଉ । କିନ୍ତୁ ଯେ ଦେଶସେବା କରିବାକୁ ପ୍ରତିଜ୍ଞାବଦ୍ଧ ସେ ଓକିଲ ହୁଅନ୍ତା କିପରି । ବାଞ୍ଛାନିଧି ବାପାଙ୍କ

କଥାକୁ ଶୁଣନ୍ତି ନାହିଁ । ସେ ଓକିଲ ନହେବା ଦ୍ୱାରା ବୃଦ୍ଧ ପିତାଙ୍କ ମାନରେ ଏ ଯେଉଁ ଦାରୁଣ ଆଘାତ ଦେଲେ ସେଥିପାଇଁ ସେ ମନଦୁଃଖ ପିନା କରନ୍ତି ନାହିଁ, କିନ୍ତୁ ତାଙ୍କ ପିତା ବାଞ୍ଛାନିଧିର କାର୍ଯ୍ୟକଳାପକୁ କାହିଁକି ପସନ୍ଦ ନକରି ସାମାନ୍ୟ ଓକିଲ ହେବାକୁ ପ୍ରବର୍ତ୍ତାଉଛନ୍ତି । ଏଥିପାଇଁ ଦୁଃଖ କରୁଥିଲେ । ଯେତେବେଳେ ତାଙ୍କର ପିତା ମନଦୁଃଖରେ ପୁତ୍ରର ଏତାଦୃଶ୍ୟ କାର୍ଯ୍ୟକଳାପ କଥା ଶୁଣୁଥାନ୍ତି, ସେତେବେଳେ ସେ ଅଞ୍ଚଳର ବହୁ ମାନ୍ୟଗଣ୍ୟ ବ୍ୟକ୍ତି ହାକିମ ହୁକୁମା ବାଞ୍ଛାନିଧିଙ୍କ କାର୍ଯ୍ୟକଳାପକୁ ବାପାଙ୍କ ଆଗରେ ଭୂରି ଭୂରି ପ୍ରଶଂସା କରନ୍ତି । ବୁଢ଼ାର ମନ ମାନେନାହିଁ । ବାଞ୍ଛାନିଧି ଘରକୁ ଫେରିବାମାତ୍ରେ ବୁଢ଼ା ଓକିଲାତି ପଢ଼ିବା କଥା କହିଲେ । ପରିଶେଷରେ ବାଞ୍ଛାନିଧି ସୂର୍ଯ୍ୟକର ବାବୁଙ୍କୁ ଖୁସି କରିବାପାଇଁ ଓକିଲାତି ପାଶ୍ କରି ନାମକୁ ମାତ୍ର ଗୋଟିଏ ଲାଇସେନ୍ସ ହାତରେ ରଖିଲେ । ସେହିକଥା ହେଲା । ସେ କଟକଠାରୁ ଓକିଲାତି ପାଶ୍ କରି ଲାଇସେନ୍ସ ପାଇଁ ପାଟଣା ହାଇକୋର୍ଟକୁ ଦରଖାସ୍ତ କଲେ । କିନ୍ତୁ ମଣିଷ ଚିନ୍ତାକରେ ପ୍ରକାରେ, ଭଗବାନ କରନ୍ତି ଆଉ ପ୍ରକାରେ । ହଠାତ୍ ବାଞ୍ଛାନିଧି ବସନ୍ତ ରୋଗରେ ଆକ୍ରାନ୍ତ ହୋଇ ଇହଲୀଳା ସମ୍ବରଣ କଲେ । ମୃତ୍ୟୁର ଖୁବ୍ କମ୍ ଦିନପରେ ତାଙ୍କର ଓକିଲାତି ଲାଇସେନ୍ସ ପାଟଣାରୁ ଆସିଲା । ବୃଦ୍ଧ ପିତାଙ୍କର ସ୍ୱପ୍ନ-ସ୍ୱପ୍ନରେ ହିଁ ରହିଗଲା । ଏବେ ବାଞ୍ଛାନିଧିଙ୍କ ଏକମାତ୍ର ପୁତ୍ର ଯଶୋଦା ମୋହନ ପ୍ରକାଶ ଗୃହକଷ୍ଟ ଗୁଡ଼ ଭିଦ୍ରୁଖରେ ଓକିଲାତି କରୁଛନ୍ତି । ଏହାଦ୍ୱାରା ତାଙ୍କର ପିତା ଓ ଜେଜେ ବାପାଙ୍କ ସ୍ୱପ୍ନ ବାସ୍ତବରେ ପରିଣତ କରିପାରିଛନ୍ତି । ଯଶୋଦା ମୋହନ ବାବୁ ମଧ୍ୟ ବାଞ୍ଛାନିଧିଙ୍କ ବଂଶ ସାହିର ସେହି ଗୃହରେ ବାସ କରୁଛନ୍ତି ।

ବାଞ୍ଛାନିଧି ମହାତ୍ମାଗାନ୍ଧିଙ୍କ ଅହିଂସା ଅସହଯୋଗ ମନ୍ତ୍ରରେ ଦୀକ୍ଷିତ ହୋଇଥିଲେ ସୁଦ୍ଧା ସେ ଚରମ ବା ସଂହାସବାଦୀମାନଙ୍କୁ ନାପସନ୍ଦ କରୁନଥିଲେ । ସେମାନଙ୍କୁ ତାଙ୍କର କବିତା ମାଧ୍ୟମରେ ପ୍ରେରଣା ଯୋଗାଉଥିଲେ । ବାଞ୍ଛାନିଧି ମାତୃଭୂମିର ସ୍ୱାଧୀନତା ପାଇଁ ସ୍ୱତନ୍ତ୍ର ପଥ ଉଦ୍ଭାବନ କରିଥିଲେ । ଯାହାଦ୍ୱାରା ସେ ଆଗୁଣ୍ଡାଳ ବ୍ରାହ୍ମଣ ଜାତିର ଆବାଳ ବୃଦ୍ଧ ବନିତାଙ୍କର ପ୍ରିୟପାତ୍ର ହୋଇ ପାରିଥିଲେ । ଯେତେବେଳେ

ଜାତୀୟ ନେତାଙ୍କ ଉପରେ ପୋଲିସର ଅକଥନୀୟ ଅତ୍ୟାଚାର ଏବଂ ଜାତୀୟ ନେତାଙ୍କୁ ପୋଲିସ ନେଇ ଜେଲ୍ ହାଜତରେ ରଖୁଥିଲେ, ସେତେବେଳେ ବୈପ୍ଲବିକ କବିତା ମାଧ୍ୟମରେ ଯାତ୍ରା ଓ ତାମସା କରି ଓଡ଼ିଶା ଓ ଓଡ଼ିଶା ବାହାରେ ବାଂଛାନିଧି ତାଙ୍କର ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ସ୍ଥାନରେ ଜନତାଙ୍କ ମନରେ ବିପ୍ଳବର ଶାଣିତ ମନ୍ତ୍ର ବପନ କରୁଥିଲେ । କିନ୍ତୁ ଇଂରେଜ ସର-କାରଙ୍କ ପୁଲିସ ସିଆଇଡି ତାଙ୍କର ଏହି ଜାତୀୟ ଜାଗରଣର ଏହି ଅଭିନବ ଉପାୟକୁ ସନ୍ଦେହ କରିପାରୁ ନଥିଲେ । ବାଂଛାନିଧି ଥିଲେ ଆଶୁକବି । ସେ ଯେକୌଣସି ସ୍ଥାନକୁ ଯାଉଥିଲେ, ସଭାସମିତିରେ ପ୍ରାରମ୍ଭିକ ଭାଷଣ ଦେବା ଅପେକ୍ଷା ସେ ସେହି ସ୍ଥାନର ତତ୍କାଳୀନ ଅବସ୍ଥାକୁ ଲକ୍ଷ୍ୟ କରି କବିତା ଲେଖିଦେଉଥିଲେ ଏବଂ ତାକୁ ନିଜେ ସ୍ୱର ଦେଇ ଗାନ କରୁଥିଲେ; ବାଂଛାନିଧି ଯେଉଁ ସ୍ଥାନରେ ଗୋଟିଏ ଦିନ ରହିବାକୁ ପ୍ରୋଗ୍ରାମ କରିଥାନ୍ତି, ସେ ସ୍ଥାନରେ ତାଙ୍କୁ ସପ୍ତାହ ସପ୍ତାହ ଧରି ରହିବାକୁ ହୋଇଥାଏ ।

ଯେମିତି ବଂଗ କବିଙ୍କ କବିତାରେ ମୁଗ୍ଧ ହୋଇ ବଙ୍ଗଲଳନା ମାନଙ୍କର ରେଶମୀ ଶାଢ଼ୀ ବର୍ଜ୍ଜନ କରିଥିଲେ ଠିକ୍ ସେହିପରି ବାଂଛା-ନିଧିଙ୍କ—

"ତେଜ ତେଜ ଭାଇ ବିଦେଶୀ ବସନରେ
(ବିଦେଶୀ) ବସନରେ ବିଲାତି ଫେସନରେ (ଧ୍ରୁବ)
ପିନ୍ଧୁ ପରଦେଶୀ ସାଜ — ନମାନୁଁ କି ଟିକେ ଲାଜ
ପରଧନ ଲୁଗାରେ କି ଥାଏ ଭାଇ ସମ୍ମାନରେ
ବିଦେଶୀ ବେପାରୀ ପୋଷି — ସ୍ୱଦେଶ ଦେଉଛ ନାଶି
ଗାଁ ଚଳି ମଲେ ହୋଇ ଅକାରଣ ବ୍ୟସନରେ......"

ସ୍ୱରଚିତ କବିତା ଗାନରେ ବାଲେଶ୍ୱରବାସୀ ବିଶେଷତଃ ବାସୁଦେବପୁର, ଭଦ୍ରଖ ଲୋକ ବିଦେଶୀ ବସ୍ତ୍ର ବର୍ଜ୍ଜନ କରି ଖଦଡ଼ ପିନ୍ଧା ଆରମ୍ଭ କଲେ । ଏଥିରୁ ଜଣାଯାଉଛି ତାଙ୍କ ବ୍ୟକ୍ତିତ୍ୱର କେତେ ବଳ ଥିଲା, କବିତ୍ୱ କେତେ ଉଚ୍ଚ କୋଟୀର ଥିଲା ଏବଂ ତାଙ୍କର ପ୍ରଭାବ କେତେ ସୁଦୂରପ୍ରସାରୀ ଥିଲା ।

ତାଙ୍କ ମୃତ୍ୟୁର ୪ବର୍ଷ ପରେ ଜନ୍ମସ୍ଥାନ ଇରମରେ ଯେଉଁ ଗୁଳିକାଣ୍ଡ ଘଟିଲା, ସେଥିରେ ପ୍ରାୟ ୨୯ଜଣ ଲୋକ ସଦ୍ୟସ୍ଥଳରେ ମୃତ୍ୟୁ ବରଣ କରିଥିଲେ ଏବଂ ୨୦୦ ପର୍ଯ୍ୟନ୍ତ ଲୋକ ଆହତ ହୋଇ-ଥିଲେ । ସେଥିରୁ ପରେ ସେହି ଆଘାତରେ କେତେ ମଲେ ଆଉ କେତେ ଏ ପର୍ଯ୍ୟନ୍ତ ଖଣ୍ଡିଆ ଖ ବର ଅଛନ୍ତି । ଏହା ହେଉଛି ଭାରତର ଦ୍ୱିତୀୟ ଜାଲିଆନାବାଗ । ସାଧାରଣ ନିରସ୍ତ ନେତା ଉପରେ ପୋଲିସର ଏ ଗୁଳିକାଣ୍ଡ ଘଟିଲାବେଳେ ଲୋକେ ବାଞ୍ଛାନିଧିଙ୍କ କବିତା ଗାନକରି **ହସି ହସି** ଗୁଳି ଆଗକୁ ଛାତି ପତାଇ ଦେଇଥିଲେ ।

ତାଙ୍କ କୃତ ଥିଏଟରରେ ତାଙ୍କ ରଚିତ ଜାତୀୟ ସଙ୍ଗୀତ ଗୁଡ଼ିକ ଗାନ କରାଯାଇ ଓଡ଼ିଶାର ଜନପଦରେ ବିପ୍ଳବର ବାତାବରଣ ସୃଷ୍ଟି କରିଥିଲେ । ସେଥିପାଇଁ ତାଙ୍କ ରଚିତ 'ଉତ୍କଳବୀଣା'ରେ ଏହି ସଙ୍ଗୀତଗାନ ଯେପରି ସୁଦୂର ପ୍ରସାରି ହେଉ, ତା'ର କାମନା କରିଛନ୍ତି ।

"ବାଜଉଠ୍ ମୋ ବାଣୀ ଉତ୍କଳର ଘରେ ଘରେ
ବାଜଉଠ୍ ମୋ ଗାନ ଉତ୍କଳୀ ଅନ୍ତରସ୍ତରେ
ବାଜଉଠ୍ ଦେଶପ୍ରୀତି-ସ୍ପନ୍ଦର-ମଧୁର ତାନ
ଝଙ୍କାରି ଉଠ୍ ମୋ ବାଣୀ ଗାଇ ସେ ମଧୁରଗାନ ।"

ରେଭେନ୍ସା କଲେଜରେ ଅଧ୍ୟୟନବେଳେ ସେ ଯେଉଁ ବହୁଳ ସଙ୍ଗୀତ ପରିବେଷଣ କରିଥିଲେ, ଏଥିରେ ସମସ୍ତେ ପ୍ରୀତ ହୋଇ ତାଙ୍କୁ କଳାକୋକିଳ ଉପାଧିରେ ଭୂଷିତ କରିଥିଲେ । ଏହି ସଙ୍ଗୀତଗାନ ପାଇଁ ସେ ଢେଙ୍କାନାଳ ଦରବାରରେ ପାଟଯୋଡ଼ା ଉପାୟନ ଲାଭ କରିଥିଲେ ମଧ୍ୟ ।

**ସାହିତ୍ୟ କୃତି** - ଏ ପର୍ଯ୍ୟନ୍ତ ଯାହା ସଂଗୃହୀତ ହୋଇଛି, ସେଥିରୁ ବାଂଛାନିଧିଙ୍କ ସାହିତ୍ୟ କୃତିକୁ ତିନିଭାଗରେ ବିଭକ୍ତ କରାଯାଇ-ପାରେ । (କ) ଜାତୀୟ ସଙ୍ଗୀତ (ଖ) ପ୍ରବନ୍ଧ (ଗ) ନାଟକ । 'ଉତ୍କଳବୀଣା'ର ୨ଟି ଝଙ୍କାର ଏବଂ ଓଡ଼ିଶା ସାହିତ୍ୟ ଏକାଡେମୀ ୧୯୭୩ରେ ପ୍ରକାଶିତ ବାଂଛାନିଧି ପଦ୍ୟାବଳୀରେ ତାଙ୍କର ଜାତୀୟ ସଙ୍ଗୀତମାନ ପ୍ରକାଶ କରିଛନ୍ତି । ଆଉରି ଅନେକ ସଙ୍ଗୀତ ଅପ୍ରକାଶିତ ଅଛି । ସେ ଓଡ଼ିଶୀ ଓ ଭଜନ ମଧ୍ୟ ଅନେକ ରଚନା କରିଛନ୍ତି ।

ଏଭଳି ଗୋଟିଏ ଅସମ୍ପୂର୍ଣ୍ଣ ପ୍ରବନ୍ଧ ଉଦ୍ଧାର କରାଯାଇଛି । ଏହାର ନାମ 'ବନ୍ଧୁତାର ବନ୍ଧ' । ଏଥିରେ ବନ୍ଧୁ ବନ୍ଧୁ ମଧ୍ୟରେ ସମ୍ପର୍କକୁ ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣ ନେଇ ବିଶ୍ଳେଷଣ କରାଯାଇଛି । ପଲ୍ଲୀଚିତ୍ର ନାମକ ଏକ ନାଟକ ସେ ରଚନା କରିଥିଲେ ଓ ଏହା ମଞ୍ଚସ୍ଥ ମଧ୍ୟ ହୋଇଥିଲା । ମାତ୍ର ଏବେ ଏହାର କେବଳ ୧ମ ଅଙ୍କର ୫ଟି ଦୃଶ୍ୟର ପାଣ୍ଡୁଲିପି ମିଳୁଛି । ଏଥିରେ ସରଳ, ନିରୀହ ପ୍ରଜାମାନଙ୍କ ଉପରେ ଜମିଦାର ବା ଶାସକ ଗୋଷ୍ଠୀର ନିର୍ମମ ଅତ୍ୟାଚାର ମୁଖ୍ୟସ୍ଥାନ ଅଧିକାର କରିଛି । ପଲ୍ଲୀର ନିଖୁଣ ଚିତ୍ର ଏଥିରେ ପୂର୍ଣ୍ଣତଃ ପରିସ୍ଫୁଟିତ ହୋଇ ପାରିଛି ।

---







# ବାଞ୍ଛାନିଧିଙ୍କ ନାଟକ ଦଳ

● ଶ୍ରୀ ଗୌରାଙ୍ଗଚରଣ ଦାସ

କୃଷ୍ଣପ୍ରସାଦ ବସୁଙ୍କ ଦ୍ୱାରା ପ୍ରତିଷ୍ଠିତ ଶ୍ୟାମ ସୁନ୍ଦର ଥିଏଟର ଦଳର ଶିବିରରେ କେନ୍ଦୁଝରର ଚମ୍ପୁଆଠାରେ ହଠାତ୍ ନିଆଁ ଲାଗିଗଲା । ଅଭିନୟ ସମୟରେ ଦିନ ୧୧ଟା ବେଳେ ଏହି ଅଗ୍ନିକାଣ୍ଡ ଘଟିଥିଲା । ଶୁଷ୍କ ତାଳପତ୍ର ଦ୍ୱାରା ନିର୍ମିତ କୁଟୀର ଗୁଡ଼ିକ ଅବିଳମ୍ବେ ଭସ୍ମୀଭୂତ ହୋଇଗଲା । ଏହି ଅଗ୍ନିକାଣ୍ଡରେ ରଙ୍ଗମଞ୍ଚର ପରଦା, ପୋଷାକ ଓ ଅନ୍ୟାନ୍ୟ ସରଞ୍ଜାମ ମଧ୍ୟ ପୋଡ଼ି ପାଉଁଶ ହୋଇଗଲା । ସ୍ଥାନୀୟ ଲୋକଙ୍କ ସହାୟତାରେ ଆମ୍ଭେମାନେ ଆପଣା ଘରକୁ ଫେରିଲୁ । ଏହି ଘଟଣାରୁ ହିଁ କୃଷ୍ଣ ବାବୁଙ୍କର ନାଟକ ଦଳର ପରିସମାପ୍ତି ଘଟିଲା ।

ମୁଁ ଭଦ୍ରକରେ ପହଞ୍ଚି ବାଞ୍ଛାନିଧି ବାବୁଙ୍କ ସହିତ ସାକ୍ଷାତ କଲି । ନାଟକ ଦଳର ଦୁରବସ୍ଥା ତାଙ୍କୁ ଜଣାଇଲି । ସେତେବେଳକୁ ସଙ୍ଗୀତ ଓ ନାଟକ କ୍ଷେତ୍ରରେ ମୁଁ ୮ବର୍ଷର ଅଭିଜ୍ଞତା ହାସଲ କରିଥିଲି । ମୋର ସଙ୍ଗୀତ ଶୁଣି ସେ ଅତ୍ୟନ୍ତ ପ୍ରୀତ ହେଲେ । ବ୍ୟକ୍ତିଗତ ସହକାରୀ ଭାବରେ ମତେ ସେହିଦିନଠାରୁ ଗ୍ରହଣ କଲେ । ୧୯୩୦ ମସିହାର ଲବଣ ଆନ୍ଦୋଳନ ସମୟରେ ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ ଓ ବାଞ୍ଛାନିଧି ବାବୁ ଦୁଇ ନେତାଙ୍କ ନିର୍ଦ୍ଦେଶରେ କର୍ମୀମାନେ ଗ୍ରାମେ ଗ୍ରାମେ ଯାଇ ସ୍ୱାଧୀନତାର ବାର୍ତ୍ତା ପ୍ରଚାର କରୁଥିଲେ । ମହତାବ ବାବୁ ଓ ବାଞ୍ଛାନିଧି ବାବୁ ଉଭୟେ ପ୍ରତ୍ୟେକ ଗାଁ ଗଣ୍ଡାକୁ ଯାଇ ସଭାସମିତି ଓ ସଙ୍ଗଠନ କାର୍ଯ୍ୟ କରୁଥିଲେ । ବାଞ୍ଛାନିଧି ବାବୁଙ୍କ ସହିତ ମୁଁ ଜାତୀୟ ସଙ୍ଗୀତ ଜରିଆରେ ସ୍ୱାଧୀନତାର ବାର୍ତ୍ତା ପ୍ରଚାର କରୁଥାଏ ।

ତାପରେ ଜିଲ୍ଲାବୋର୍ଡ ଓ ଲୋକାଲ ବୋର୍ଡ ପାଇଁ ନିର୍ବାଚନ ହେଲା । ବାଞ୍ଛାନିଧି ବାବୁ ଭଦ୍ରକ ଲୋକାଲ ବୋର୍ଡର ଚେୟାରମ୍ୟାନ ନିର୍ବାଚିତ ହେଲେ । ଲୋକାଲ ବୋର୍ଡ ଚେୟାରମାନ ଭାବରେ ସେ ଦେଶାତ୍ମବୋଧ ସଙ୍ଗୀତର ପ୍ରଚାର ସହିତ ଗାଁ ଗହଳରେ

ରାସ୍ତାଘାଟ ଓ ଜଳ ଅଭାବର ଦୂରୀକରଣ ପାଇଁ ମଧ୍ୟ ବିଶେଷ ଉଦ୍ୟମ କରୁଥିଲେ ।

ଦିନେ ସନ୍ଧ୍ୟାବେଳେ ଆମେ ଦୁଇଜଣ ବସିଥାଉ । ଜଣେ ଲୋକ ଆଖିରୁ ଲୁହ ପୋଛି ପୋଛି ସେହିବାଟେ ଯାଉଥିଲା । ତା ଦେହରେ ଆଣ୍ଠୁ ଲୁଚୁ ନଥିବା ମଇଳା ଲୁଗା ଖଣ୍ଡିଏ ବ୍ୟତୀତ ଆଉ କିଛି ନଥିଲା । ବାଂଛାନିଧି ବାବୁ ତାକୁ ଡାକି ଦୁଃଖର କାରଣ ପଚାରିଲେ । ନିରୀହ ଲୋକଟି କାନ୍ଦି କାନ୍ଦି ଉତ୍ତର ଦେଲା "ବଡ଼ ସାତପରାଣି କୁଟୁମ୍ବ । ମୂଲଲାଗି ସେମାନଙ୍କୁ ପୋଷେ । ଜମି ବି'ଘାଏ ଅଛି । ଏବର୍ଷ ଫଳୁଛି ନ ତିନି ବର୍ଷ ମରୁଡ଼ି । ଏଠାରେ ଜଣେ ମହାଜନଙ୍କ ଠାରୁ ଟଙ୍କା ପଚାଶଟି ଧାର କରିଥିଲି । ଦୁଇବର୍ଷ ଉପରେ ହେଲାଣି । ସୁଧ କୋଡ଼ିଏ ଟଙ୍କା ଦେଲିଣି । ଏବର୍ଷ ତ ଇନ୍ଦ୍ର ଚାଳିଲା ନାହିଁ । ଚାଷହେଲା ନାହିଁ । ଖାଇବା ବାସନ ବନ୍ଧା ପକାଇ ମହାଜନକୁ ୫ଟି ଟଙ୍କା ଦେବାକୁ ଯାଇଥିଲି ମାତ୍ର ମହାଜନ ମୋ ଟଙ୍କା ଫୋପାଡ଼ି ଦେଲେ । ଅପମାନିତ କଲେ । ପିଟି ମାଡ଼ ଦେଲେ । ଶେଷରେ କହିଲେ ଆଠଦିନ ମଧ୍ୟରେ ପଚାଶ ଟଙ୍କା ନଦେଲେ ଦୁଇଶହ ପଚିଶ ଟଙ୍କା ପାଇଁ ନିଲାମ୍ କରି ତୋର ଘରଡିହ ନିଲାମ କରିଦେବି । ଏହି ଅନାଟନ ବେଳେ ମୋର କୁଟୁମ୍ବ ଓଳିଏ ଖାଇ ଓଳିଏ ଉପାସ ରହୁଛନ୍ତି । ଟଙ୍କା କେଉଁଠୁ ପାଇବି ସେ ଦେଖା ଶୁଝୁନି ।

ବାଞ୍ଛାନିଧି ବାବୁଙ୍କର ଆଖି ଛଳ ଛଳ ହୋଇଗଲା । ଟିକେ ବସ ବୋଲି ତାକୁ କହି ସେ ଘର ଭିତରକୁ ଗଲେ । ଅବିଳମ୍ବ ପଚାଶ ଟଙ୍କା ଆଣି ଲୋକଟି ହାତରେ ଗୁଞ୍ଜି ଦେଇ କହିଲେ ଏହି ଟଙ୍କା ଦେଇ ତୁମ କାଗଜ ବାହାରକରି ଆଣ ।

ସେତେବେଳେ ଗୋଟିଏ ରେକର୍ଡ କମ୍ପାନୀରେ ଦେଶାତ୍ମବୋଧ ସଙ୍ଗୀତ ରେକର୍ଡ କରିବା ପାଇଁ ମୁଁ ପ୍ରତିବର୍ଷ କଲିକତା ଯାଉଥିଲି । ସେଠାରେ କଳାକାର ମାନଙ୍କ ସାହାଯ୍ୟରେ ଗୋଟିଏ ସିନେମା କମ୍ପାନୀରେ ହଠାତ୍ ମୋତେ ଚାକିରିଟିଏ ମିଳିଲା । ଏହି ଶୁଭ ଖବରଟି ବାଞ୍ଛାନିଧି ବାବୁଙ୍କୁ ଜଣାଇ ତାଙ୍କର ଆଶୀର୍ବାଦ ନେବାପାଇଁ ମୁଁ ଗଭୀର ଆନନ୍ଦର ସହିତ ଭଦ୍ରକ

ବ ହୁଉଡ଼ିଲ, ମାତ୍ର ବାଞ୍ଛାନିଧି ବାବୁ ଏହି ଖବର ପାଇ ହଠାତ୍ ଗମ୍ଭୀର ହୋଇଗଲେ । ଗୋଟିଏ ଦୀର୍ଘ ନିଶ୍ୱାସ ପକାଇ କହିଲେ ଓଡ଼ିଆ ଘରେ ଜନ୍ମ ହୋଇ ଓଡିଶାର ପାଣି ପବନରେ ବଡ଼ ହୋଇ ତୁମେ କଲିକତାରେ ଗାୟକ ହେବ ? ସେଠାରେ କ'ଣ ଗାୟକ ଅଭାବ ।

ଏହା ଶୁଣିବା ପରେ ତାଙ୍କ ପାଖରେ ରହିବା ପାଇଁ ମୁଁ ସମ୍ମତ ହେଲି । ସେ ନିଯୁକ୍ତି ପତ୍ର ଖଣ୍ଡିକ ଚିରି ଫୋପାଡ଼ି ଦେଲେ । ସେଠାରେ ଛଅମାସ ଉଦ୍ୟମ କରି ଆମେ ଗୋଟିଏ ନାଟକ ଦଳ ଗଢ଼ିଲୁ । ପ୍ରଥମେ କାଳପୁର ଜମିଦାରଙ୍କ କଚେରୀରେ ନାଟକ ଅଭିନୟ କଲୁ । ସେଠାରେ ପ୍ରଶଂସିତ ହେବାରୁ ଆମର ଉତ୍ସାହ ଦ୍ୱିଗୁଣିତ ହେଲା ।

ନୀଳଗିରି ରାଜବାଡ଼ିରେ ସରସ୍ୱତୀ ପୂଜା ଆଡ଼ମ୍ବରରେ ପାଳିତ ହୁଏ । ତେଣୁ ସେହି ଦିନ ସେଠାରେ ନାଟକ ଅଭିନୟ କରିବା ପାଇଁ ଉଦ୍ୟମ କଲୁ । ନୀଳଗିରିରାଜାସାହେବ ଆମର ଦେଶାତ୍ମବୋଧ ନାଟକ ଓ ସଙ୍ଗୀତରେ ପ୍ରୀତ ହୋଇ ଗୋଟିଏ ମାସ ସେଠାରେ ରହିବାର ବ୍ୟବସ୍ଥା କରିଦେଲେ । ଆମର ପୋଷାକ ଓ ରଙ୍ଗମଞ୍ଚର ସରଞ୍ଜାମ କିଣିବା ପାଇଁ ଆମକୁ ବିଶେଷ ଭାବରେ ସାହାଯ୍ୟ କଲେ । ସେଠାରେ ମାସେ ରହିବାପରେ ଆମେ ନୀଳଗିରି ରାଜାଙ୍କ ଠାରୁ ସୁପାରିସ ପତ୍ର ନେଇ ବାରିପଦା ଆସିଲୁ । ମୟୂରଭଞ୍ଜ ରାଜାଙ୍କର ସାହାଯ୍ୟ ଓ ସହଯୋଗରେ ଆମେ ମୟୂରଭଞ୍ଜର ବିଭିନ୍ନ ସ୍ଥାନରେ ନାଟକ ପରିବେଷଣ କରିଥିଲୁ । ସେଠାରୁ ଟାଟା ଖଡ଼ଗପୁର ଓ ମେଦିନୀପୁର ପ୍ରଭୃତି ଯାଇଥିଲୁ । ତାପରେ କଲିକତାର ବିଭିନ୍ନ ସ୍ଥାନରେ ଅଭିନୟ କରିଥିଲୁ । ପରବର୍ଷ କେନ୍ଦୁଝର ରାଜାଙ୍କର ନିମନ୍ତ୍ରଣ ପାଇ ଆମେ କେନ୍ଦୁଝର ଯାଇଥିଲୁ । କେନ୍ଦୁଝରରୁ ଆମେ ଦଶପଲ୍ଲା, ଢ଼େଙ୍କାନାଳ ଓ ତାଳଚେର ମଧ୍ୟ ନାଟକ ପ୍ରଦର୍ଶନ ପାଇଁ ଯାଇଥିଲୁ ।

୧୯୩୮ ମସିହାରେ ଗାନ୍ଧୀ ସେବାସଂଘର ଅଧିବେଶନ ପାଇଁ ବାଞ୍ଛାନିଧି ବାବୁ ଡେଲାଙ୍ଗ ଆସିଲେ । ଡେଲାଙ୍ଗ ସମ୍ମିଳନୀ ପରେ ତାଳଚେର ଫେରିବାର ଥାଏ । ହଠାତ୍ ତାଙ୍କୁ ଭିପୁଙ୍କର ସନ୍ଧି ଓ ଜ୍ୱର

ହେଲା । ତାପରେ ବସନ୍ତ ରୋଗରେ ସେ ଅଶାନ୍ତ ହୋଇ ପଡ଼ିଲେ । ତେଣୁ ସାନ ଭାଇ ସଞ୍ଚିତ ଯେ ଭଦ୍ରକ ଫେରିଲେ । ତାଙ୍କର ଅନୁରୋଧ ରକ୍ଷା-କରି ଆମେ ନୟାଗଡ଼ ଗଲୁ । ନୟାଗଡ଼ରେ କେତେଦିନ ଅଭିନୟ ପ୍ରଦର୍ଶନ ପରେ ଆମେ ରଣପୁର ଗଲୁ । ସେଠାରୁ ଦୁଇଦିନ ପରେ ରଣପୁର ରାଜାଙ୍କ ଠାରୁ ବିଦାୟ ନେଇ ବସାକୁ ଫେରିଲୁ ହଠାତ୍ ଗୋଟିଏ ଟେଲିଗ୍ରାମ୍ ଦେଖି ଚମକି ପଡ଼ିଲି । ଟେଲିଗ୍ରାମଟି ଖୋଲି ଦେଖିଲି—
'Banchhanidhi Expired'.

— — —







# ସ୍ୱାଗତିକା

● ବିଶ୍ୱମ୍ଭର ପରିଡ଼ା

* ଘନ ଘୋର ଅନ୍ଧକାର ରାତି
ଅପମାନ ନୈରାଶ୍ୟ ପ୍ରଭ୍ରାନ୍ତି
ଦ୍ୱେଷ, ହିଂସା, ଅଭାବର ସାଥି
ଦଗ୍ଧୀଭୂତ ଏ ବିଶାଳ ଜାତି
ତମ ଆଗମନ ପାଇଁ ସଜାଉଥିଲୁ ବେଦୀ
ଏତେବେଳେ !
ତବ ଶୁଭ ଶଙ୍ଖଧ୍ୱନି ଆସେ କର୍ଣ୍ଣ ଭେଦି !

* ମୃତ୍ୟୁଆଡ଼େ ଜଳଉଠେ ବିପ୍ଳବର ଯୁଇ
ପ୍ରାଚୀ ଦିଗ୍‌ବଳୟ କୋଳୁ
ସ୍ୱାଭିମାନ ସୂର୍ଯ୍ୟ ଆସେ ଉଇଁ
ଜନତାର ପଟୁଆର ଚଳେ—
ଜନପଥ ପୂରିଯାଏ
ଆଶା ଆଉ ବିଜୟର ସୁବାସିତ ଫୁଲେ ।

* ତମ ଗୀତି ତମ ପାଇଁ ଯୋଗ୍ୟ 'ସ୍ୱାଗତିକା'
ଜାତିପାଇଁ
ଦେଶପାଇଁ
ଶତାବ୍ଦୀର ପାଇଁ
ଏହା ଏକ ଜ୍ୱାଳାମୟୀ ଲେଲିହାନ ଶିଖା ।



(ସ୍ୱାଧୀନତା ରଜତଜୟନ୍ତୀ ଅବକାଶରେ ଜାତୀୟ କବି ଶ୍ରୀ ବୀର-କିଶୋର ଦାସ ଓ ସ୍ୱର୍ଗତ ବାଞ୍ଛାନିଧି ମହାନ୍ତିଙ୍କୁ ଏକ ଭକ୍ତିପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି

# ଜାତୀୟ କବି ସଂବର୍ଦ୍ଧନା କମିଟିର ସଭ୍ୟବୃନ୍ଦ

**ସଭାପତି** : ଶ୍ରୀ ଯଦୁନାଥ ଦାଶ ମହାପାତ୍ର

**ସମ୍ପାଦକ** : ଶ୍ରୀ ଚନ୍ଦ୍ରଶେଖର ମହାପାତ୍ର

**ସଭ୍ୟ** : ଶ୍ରୀ ମୁରଲୀଧର କାନୁନ୍‌ଗୋ, ଶ୍ରୀ ଶ୍ରୀହର୍ଷ ମିଶ୍ର, ଶ୍ରୀ ସଚ୍ଚିଦାନନ୍ଦ କର, ଶ୍ରୀ ଅଦ୍ୱୈତବଲ୍ଲଭ ରାୟ, ଡାକ୍ତର ଗଗନଚନ୍ଦ୍ର ମିଶ୍ର, ଡାକ୍ତର ଜେନାମଣି ନରେନ୍ଦ୍ର କୁମାର, ଅଧ୍ୟାପିକା କ୍ଷୀରୋଦା କୁମାରୀ ପରିଜା, ଶ୍ରୀମତୀ ରତ୍ନମାଳୀ ଜେମା, ଶ୍ରୀମତୀ ବିନୀତା ପାଠକ, ଶ୍ରୀ ବିଶ୍ୱମ୍ଭର ପଣ୍ଡା, ଶ୍ରୀ ବସନ୍ତ କୁମାର ଦାସ, ଶ୍ରୀ ରବୀନ୍ଦ୍ରକୁମାର ମିଶ୍ର, ଶ୍ରୀ ନରସିଂହ ତ୍ରିପାଠୀ, ଶ୍ରୀ ମହେନ୍ଦ୍ର କୁମାର ମିଶ୍ର, ଶ୍ରୀ ତ୍ରୈଲୋକ୍ୟନାଥ ମହାନ୍ତି, କବିରାଜ ପୂର୍ଣ୍ଣଚନ୍ଦ୍ର ମିଶ୍ର, ଅଧ୍ୟାପିକା ବୀଣା ମହାନ୍ତି, ଶ୍ରୀ ରାମପ୍ରସାଦ ମହାନ୍ତି, ଶ୍ରୀ ରାମହରି ମିଶ୍ର, ଶ୍ରୀ ଆର. ପି. ଶାସ୍ତ୍ରୀ । ଶ୍ରୀ ପ୍ରଫୁଲ୍ଲଚନ୍ଦ୍ର ରାୟ ।

କମିଟିର ବିଭିନ୍ନ କାର୍ଯ୍ୟରେ ଏବଂ ଅଭିନନ୍ଦନ ଗ୍ରନ୍ଥ ପ୍ରକାଶରେ ଶ୍ରୀ ସୁରେଶଚନ୍ଦ୍ର କାନୁନଗୋ ଓ ଶ୍ରୀ ପଣ୍ଡିତ ନନ୍ଦଙ୍କର ସାହାଯ୍ୟ ମଧ୍ୟ ଉଲ୍ଲେଖଯୋଗ୍ୟ ।



ସ୍ୱାଧୀନତାର ରଜତ ଜୟନ୍ତୀ ଅବକାଶରେ

ଦେଶର ଅଗଣିତ ଜନ ସମୁଦାୟକୁ 'ଦେଶାତ୍ମବୋଧ'ରେ ଅନୁପ୍ରାଣିତ କରିଥିବା

ଜାତୀୟ କବି 'ବାଞ୍ଛାନିଧି ଓ ବୀରକିଶୋର'ଙ୍କୁ ଭକ୍ତିପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛୁ

ବିନୀତ

ପ୍ରଜାତନ୍ତ୍ର ପ୍ରଚାର ସମିତି

କଟକ-୨










Envelopes
Diaries
Files
Registers
Type Paper
Science Books
Bound Books
Drawing Books
Map Drawing Books
Handwriting Books
Exercise Books
Practical Records
Duplicating Paper
Duplicating Books

ALWAYS INSIST ON



PRODUCTS

ACADEMICAL FORMS & REGISTERS

ମୁଖ୍ୟ ପରିବେଷକ

# ଶ୍ରୀ ଷ୍ଟୋର୍ସ

ବାଙ୍କାବଜାର, କଟକ - ୨

Sole selling agents
ALOK SAHITYA PRATISTHAN
Publications

Dealer in
all kinds of
Stationeries









# ଗାୟକଙ୍କ ଅନୁଭୂତି

## ଶ୍ରୀ ଅଦ୍ୱୈତ ବଲ୍ଲଭରାୟ

ବ୍ରିଟିଶ ସରକାର ବିରୁଦ୍ଧରେ ଏବଂ ଦେଶାତ୍ମବୋଧ ସୃଷ୍ଟି ପାଇଁ କବିତା ଲେଖି ଜାତୀୟ କବି ବୀରକିଶୋର ଦାସ କାରାବରଣ କରିଥିଲେ । ତାଙ୍କର କବିତ ଗାନ ପାଇଁ ମୁଁ ମଧ୍ୟ ତତ୍କାଳୀନ କର୍ମଚାରୀ ଗୋଷ୍ଠୀର ବିଷଦୃଷ୍ଟିରେ ପଡି ଶେଷରେ ଗିରଫ ହୋଇଥିଲି । ସତେ ଯେପରି ତାଙ୍କର କବିତାରେ ବଜ୍ରଶକ୍ତି ଥିଲା । ଯାହା ଇଂରେଜମାନଙ୍କ ପ୍ରତି ହୃଦୟବିଦାରକ ବିବେଚିତ ହେଉଥିଲା ।

ଛୋଟ ଛୋଟ ବାଳକମାନେ ନିଶାନିବାରଣ ପାଇଁ ମଦ ଦୋକାନ ଆଗରେ ପିକେଟିଂ କରୁଥିଲେ । ସେମାନଙ୍କୁ କରେଣ୍ଟା ଭିତରେ ଖାଡ଼ି ବାନ୍ଧି ଠିଆ କରାଯାଇ ବେତମାଡ଼ ଦିଆଯାଉଥିଲା । ବୀରବାବୁଙ୍କର ଗୋଟିଏ କବିତା ସେହି ଘଟଣାକୁ ଲକ୍ଷ୍ୟ କରି ଲେଖା ଯାଇଥିଲା । ତାହା ମୁଁ ଗାନ କରିଥିଲି । ତଦ୍ଦ୍ୱାରା ଗୋରା ଓ କଳା ହାକିମମାନେ ଏତେ ଲଜ୍ଜିତ ହେଲେ ଯେ, ଆଉ ବେତମାଡ଼ ଦେଲେନାହିଁ । ଏହି ବେତମାଡ଼ ଗୀତଟି ବୋଲିବା ପାଇଁ କଟକ ତଥା ଓଡ଼ିଶାର ବହୁ ଅଞ୍ଚଳରୁ ମତେ ଅନୁରୋଧ କରାଯାଇଥିଲା । ସେ ସମୟରେ ଡାକବାକ ଯନ୍ତ୍ରର ପ୍ରଚଳନ ହୋଇନଥାଏ । ମାତ୍ର ବୀରବାବୁଙ୍କର କବିତା ମୋ ଗଳାରେ ଶୁଣିବା ପାଇଁ କେତେକ ସ୍ଥାନରେ ହଜାର ହଜାର ଲୋକ ସମବେତ ହେଉଥିଲେ ।

ଜେଲରୁ ଆମେ ମୁକ୍ତ ହେଲୁ । ମାତ୍ର ବୀରବାବୁଙ୍କର କବିତା ଗାନପାଇଁ ଚାରି-ଆଡ଼ୁ ମତେ ଏତେ ଅନୁରୋଧ ଆସୁଥାଏ ଯେ ସାମାନ୍ୟ ବିଶ୍ରାମ ନେବା ମୋ ପକ୍ଷରେ ସମ୍ଭବ ହେଉ ନଥାଏ । ରାଜନୈତିକ ନେତାମାନଙ୍କର ଜୟନ୍ତୀ ଓ ଶ୍ରାଦ୍ଧ ସଭା ମାନଙ୍କରେ ବୀରବାବୁଙ୍କ କବିତା ଗାନ କରିବା ମୋର ଅଭ୍ୟାସରେ ପରିଣତ ହୋଇଥିଲା । ଏବେ ମଧ୍ୟ ସେଥିରୁ ବିରତି ମିଳିନାହିଁ ।

ତାଙ୍କର କବିତାରେ ସେ ତତ୍କାଳୀନ ଘଟଣାବଳୀକୁ ଯେପରି ବର୍ଣ୍ଣନା କରିଛନ୍ତି, ସ୍ୱାଧୀନତାର ୨୭ବର୍ଷ ପରେ ମଧ୍ୟ ତାହାର କୌଣସି ପରିବର୍ତ୍ତନ ହୋଇନାହିଁ । ସେ ଦୀର୍ଘ ଦିନ ହେଲା ଅସୁସ୍ଥ ଓ ଶଯ୍ୟାଶାୟୀ, ମୁଁ ମଧ୍ୟ ହୃଦ୍-ରୋଗରେ ଆକ୍ରାନ୍ତ ହୋଇ ପଡ଼ିଲିଣି । ମାତ୍ର ତାଙ୍କର ଗୋଟିଏ କବିତା ଏବେ ମଧ୍ୟ ସବିଶେଷ ମର୍ମସ୍ପର୍ଶୀ ହେଉଅଛି । ତାହା ହେଉଛି—

"ଖଜଣା ଟିକସ ନ କମିଲେ ଭାଇ ସବୁ ଜାତିଙ୍କର କୂଳ ବୁଡ଼ିବ ।" ଏବେତ ଖଜଣା ଟିକସ ବୃଦ୍ଧି ଶାସନର ପ୍ରଧାନ କାର୍ଯ୍ୟ ହୋଇଛି । ବୀରବାବୁଙ୍କର ଅଙ୍ଗ ଅଚଳ ମାତ୍ର ମନ ସଚଳ ଅଛି । ସେ ଏବେ ମଧ୍ୟ ଦେଶକଥାହିଁ ଚିନ୍ତା କରୁଛନ୍ତି ଓ କବିତା ଲେଖୁଛନ୍ତି । ମୁଁ ମଧ୍ୟ ବଞ୍ଚିଥିବା ପର୍ଯ୍ୟନ୍ତ ବୀରବାବୁଙ୍କର କବିତା ଗାନ କରି ଦେଶାତ୍ମବୋଧକୁ ଯଥା ସମ୍ଭବ ଜାଗ୍ରତ ରଖୁଥିବି । ଏହାହିଁ ମୋର ଜୀବନର କାମନା—

———



ଜାତୀୟକବି ସମ୍ବର୍ଦ୍ଧନା କମିଟିର ପ୍ରଥମ ବୈଠକ

Printed at—'SATAKSHI, Stoney Road, Cuttack-2